# ବ୍ରଜସୁନ୍ଦର-ସ୍ମାରକଗ୍ରନ୍ଥ



ସମ୍ପାଦନା—

ଶ୍ରୀ ଜାନକୀ ବଲ୍ଲଭ ମହାନ୍ତି
ଶ୍ରୀ ବରଦାନନ୍ଦ କର

ପ୍ରକାଶକ—
ଉତ୍କଳ ସାହିତ୍ୟ ସମାଜ
ଶ୍ରୀରାମଚନ୍ଦ୍ର ଭବନ
କଟକ

ପ୍ରଥମ ସଂସ୍କରଣ - ୧୯୬୨


ମୁଦ୍ରାକର—
ଶ୍ରୀ ବଙ୍କମୋହନ ଦାସ
ଉଗର ପ୍ରେସ୍
ପିଠାପୁର
କଟକ-୧

ମୂଲ୍ୟ—ତିନିଟଙ୍କା ମାତ୍ର



ଜନ୍ମ —୧୮୮୦ ଜୁଲାଇ ୨ତାରିଖ

ତିରୋଧାନ—୧୯୪୪ ଜୁନ୍ ୯ତାରିଖ

# ସମ୍ପାଦକୀୟ ସୂଚନା

ଚଳିତ ଶତାବ୍ଦୀର ଉତ୍କଳର ବରପୁତ୍ରମାନଙ୍କ ମଧ୍ୟରୁ ୯ବ୍ରଜସୁନ୍ଦର ଦାସ ଅନ୍ୟତମ । ଆଜୀବନ ଦେଶ ହିତୈଷୀ, ସହୃଦୟ ଜନସେବକ, ସୁଦକ୍ଷ ବ୍ୟବସ୍ଥାପକ ଓ ନିଷ୍ଠାପର ସାହିତ୍ୟସେବୀ ଭାବେ ସେ ଜନ୍ମଭୂମିର ମୁଖ ଉଜ୍ଜ୍ୱଳ କରି ଯାଇଛନ୍ତି । ତାହାଙ୍କର ଉଦାର ହୃଦୟବତ୍ତା, ସୁମହତ୍ ସ୍ୱଭାବ ଓ ସଦାଶୟତାର ପଟାନ୍ତର ନାହିଁ । ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ଓ ଓଡ଼ିଶାର ବହିର୍ଭୂତ ଅଞ୍ଚଳର ମିଶ୍ରଣ ଲାଗି ତାଙ୍କର ଦୀର୍ଘକାଳ ବ୍ୟାପୀ ସାଧନା ଅବିସ୍ମରଣୀୟ ।

୧୯୪୪ ମସିହା ଜୁନ୍ ୯ ତାରିଖରେ ଉତ୍କଳର ଏହି ବରେଣ୍ୟ ବ୍ୟକ୍ତିଙ୍କର ଦେହାନ୍ତ ହୋଇଥିଲେହେଁ ତାଙ୍କର ଉପଯୁକ୍ତ ସ୍ମୃତିରକ୍ଷା କଳ୍ପେ କୌଣସି କାର୍ଯ୍ୟାନୁଷ୍ଠାନ ହୋଇପାରି ନଥିଲା । ଉତ୍କଳ ସାହିତ୍ୟ ସମାଜ କାର୍ଯ୍ୟନିର୍ବାହିକା ସମିତି ତା୨୨।୩।୧୯୬୯ରେ ଅଧିବେଶନରେ ବ୍ରଜ-ସୁନ୍ଦରଙ୍କର ଏକ ତୈଳଚିତ୍ର ଶ୍ରୀରାମଚନ୍ଦ୍ର ଭବନ ପ୍ରକୋଷ୍ଠରେ ସ୍ଥାପନ କରିବାକୁ ସିଦ୍ଧାନ୍ତ ଗ୍ରହଣ କରିଥିଲେ । ଆମ୍ଭମାନଙ୍କ ଅନୁରୋଧକ୍ରମେ ବ୍ରଜସୁନ୍ଦରଙ୍କ ଜ୍ୟେଷ୍ଠଜାମାତା ଶ୍ରୀଯୁକ୍ତ ନିକୁଞ୍ଜକିଶୋର ଦାସ ବ୍ରଜସୁନ୍ଦରଙ୍କ ଏକ ପୁରାତନ ତୈଳଚିତ୍ର ସାହିତ୍ୟ ସମାଜକୁ ସାଗ୍ରହେ ଅର୍ପଣ କରି ଉକ୍ତ ତୈଳଚିତ୍ରଟି ବହୁ ପୂର୍ବେ 'ବ୍ରଜସୁନ୍ଦର ସ୍ମୃତିରକ୍ଷା କମିଟି' ପକ୍ଷରୁ ପ୍ରସ୍ତୁତ ହୋଇଥିବା ବିଷୟ ଜଣାଇଥିଲେ । ଯାହାହେଉ, ଉକ୍ତ ତୈଳଚିତ୍ରଟିକୁ ରଞ୍ଜିତ ଓ ସଂସ୍କୃତ କରାଯାଇ ତାହା ଆନୁଷ୍ଠାନିକ ଭାବେ ଶ୍ରୀରାମଚନ୍ଦ୍ର ଭବନରେ ୭ । ୬ । ୧୯୭୦ରେ ଶ୍ରୀଯୁକ୍ତ ରାଧାନାଥ ରଥଙ୍କ ଦ୍ୱାରା ଉନ୍ମୋଚିତ ହୋଇଥିଲା । ଉକ୍ତ ଉତ୍ସବ ଉପଲକ୍ଷେ ଆୟୋଜିତ ସଭାରେ ବ୍ରଜସୁନ୍ଦରଙ୍କ ସ୍ମାରକ ଗ୍ରନ୍ଥ ସାହିତ୍ୟ ସମାଜ ପକ୍ଷରୁ ପ୍ରକାଶ କରିଯିବାପାଇଁ ସର୍ବସମ୍ମତିକ୍ରମେ ମତ ବ୍ୟକ୍ତ ହେଲା ଓ ଏଥିପାଇଁ ସାହିତ୍ୟ ସମାଜର ଆବେଦନ କ୍ରମେ ଓଡ଼ିଶା ସରକାର ଏକ ହଜାର ଟଙ୍କା ସାହାଯ୍ୟ ପ୍ରଦାନ କରିଥିଲେ ।

ଏହାପରେ ସାହିତ୍ୟ ସମାଜ ପକ୍ଷରୁ ଏହି ପରିକଳ୍ପିତ ଗ୍ରନ୍ଥଲାଗି ରଚନାବଳୀ ସଂଗ୍ରହ ଓ ତାହାର ସମ୍ପାଦନାର ଦାୟିତ୍ୱ ଆମ୍ଭମାନଙ୍କୁ ଗ୍ରହଣ କରିବାକୁ ପଡ଼ିଲା । ବ୍ରଜସୁନ୍ଦରଙ୍କ ବହୁ ସହକର୍ମୀ ଓ ବନ୍ଧୁ ଆଜି ଆଉ ଜୀବିତ ନାହାନ୍ତି । ତଥାପି ଆମ୍ଭେ, ବ୍ରଜସୁନ୍ଦରଙ୍କ ଘନିଷ୍ଠ ସଂସ୍ରବରେ ଆସିଥିବା ବହୁ ବିଶିଷ୍ଟ ବ୍ୟକ୍ତିଙ୍କୁ ତାହାଙ୍କ ସମ୍ପର୍କରେ କିଛି ଲେଖିଦେବାକୁ ବହୁ ଅନୁରୋଧ କରି ବିଫଳ ହୋଇଛୁ, ଏହା ଅତ୍ୟନ୍ତ ଦୁଃଖର ସହିତ ସ୍ୱୀକାର କରୁଛୁ । ଯେଉଁ ସଦାଶୟ ବ୍ୟକ୍ତିଗଣ ଆମ୍ଭର ଅନୁରୋଧ ରକ୍ଷା କରି ସେମାନଙ୍କ ମୂଲ୍ୟବାନ ରଚନାବଳୀ ଦ୍ୱାରା ଏହି ସଂକଳନକୁ ପୂର୍ଣ୍ଣାଙ୍ଗ କରିବାରେ ସାହାଯ୍ୟ କରିଛନ୍ତି, ସେମାନଙ୍କୁ ସାହିତ୍ୟ ସମାଜ ପକ୍ଷରୁ ସର୍ବାଦୌ କୃତଜ୍ଞତା ଜ୍ଞାପନ କରୁଅଛୁ ।

ଏହି ଗ୍ରନ୍ଥ ସମ୍ପାଦନା ଲାଗି ଆମ୍ଭମାନଙ୍କୁ ବ୍ରଜସୁନ୍ଦରଙ୍କ ସହଧର୍ମିଣୀ ଶ୍ରୀମତୀ ଉମାସୁନ୍ଦରୀ ଦେବୀ, କନ୍ୟା ଶ୍ରୀମତୀ ପୁଣ୍ୟପ୍ରଭା ଦାସ, ପୁତ୍ର ଶ୍ରୀଯୁକ୍ତ ସତ୍ୟସୁନ୍ଦର ଦାସ,ଶୁଭସୁନ୍ଦର ଦାସ ଓ ଜାମାତା ଶ୍ରୀଯୁକ୍ତ ନିକୁଞ୍ଜକିଶୋର ଦାସ ଓ ଶ୍ରୀଯୁକ୍ତ ବାମାଚରଣ ଦାସ ଏବଂ ବ୍ରଜସୁନ୍ଦରଙ୍କ ଗୃହତତ୍ତ୍ୱାବଧାରକ ଶ୍ରୀ ମଦନ ବହୁ ପୁରାତନ ପତ୍ର-ପତ୍ରିକାଦି ସାହାଯ୍ୟ କରିଥିବାରୁ ଆମ୍ଭେ ସେମାନଙ୍କ ନିକଟରେ କୃତଜ୍ଞ ।

ଏହି ସ୍ମାରକ ଗ୍ରନ୍ଥରେ ପ୍ରକାଶିତ ପ୍ରବନ୍ଧାବଳୀରେ ଲେଖକମାନଙ୍କର ବିଭିନ୍ନ ବ୍ୟକ୍ତିଗତ ମତାମତ ପ୍ରକାଶ ପାଇଅଛି । କୌଣସି କୌଣସି ପ୍ରବନ୍ଧରେ ବ୍ରଜସୁନ୍ଦରଙ୍କ ଚରିତ୍ରର ପରସ୍ପର-ବିରୋଧୀ ଗୁଣାବଳୀ ବିଷୟ ଉଲ୍ଲିଖିତ ହୋଇଥିଲେ ହେଁ ଆମ୍ଭେମାନେ ତାହାକୁ ଲେଖକଙ୍କର ସମ୍ପୂର୍ଣ୍ଣ ବ୍ୟକ୍ତିଗତ-ସ୍ମୃତିବିଜଡ଼ିତବିଷୟ ଭାବେ ଗ୍ରହଣ କରିଅଛୁ ।

ବ୍ରଜସୁନ୍ଦରଙ୍କର ପୂର୍ଣ୍ଣାଙ୍ଗ ଜୀବନୀ ସଂକଳନ କରିବା ଆମ୍ଭମାନଙ୍କ ପକ୍ଷେ ସମ୍ଭବପର ହୋଇ ପାରିନାହିଁ । ମାତ୍ର ଏହି ସଂକଳନ ବ୍ରଜସୁନ୍ଦରଙ୍କ ପୂର୍ଣ୍ଣାଙ୍ଗ ଜୀବନୀ ରଚନା କରିବାରେ ଭବିଷ୍ୟତର ଜୀବନୀକାରଙ୍କ ପକ୍ଷେ ସହାୟକ ହେବ, ଏହାହିଁ ଆମ୍ଭମାନଙ୍କର ଆଶା ଓ ବିଶ୍ୱାସ ।



# ସୂଚୀ

## ସ୍ମୃତକଥା—



## ସ୍ମୃତି-ଗୀତିକା—

## ପରିଶିଷ୍ଟ

ବ୍ରଜସୁନ୍ଦରଙ୍କ ରଚନାବଳୀ—





# ବ୍ରଜସୁନ୍ଦର ଦାସ

## ପଦ୍ମଶ୍ରୀ ଲକ୍ଷ୍ମୀନାରାୟଣ ସାହୁ

୧୯୪୪ ମସିହାରେ ବ୍ରଜସୁନ୍ଦର ଦାସଙ୍କର ମୃତ୍ୟୁ ହେଲା । ସେ ୭୩ ବର୍ଷ ବଞ୍ଚିଥିଲେ । ତାଙ୍କର ପିତାମହ ହରେକୃଷ୍ଣ ଦାସ, ଓଡ଼ିଶାର ପ୍ରଥମ ଡେପୁଟି ମାଜିଷ୍ଟ୍ରେଟ ଥିଲେ । ହରେକୃଷ୍ଣ ଦାସଙ୍କର ପୁଅ ଶ୍ୟାମସୁନ୍ଦର ଦାସ । ବ୍ରଜସୁନ୍ଦର, ଶ୍ୟାମସୁନ୍ଦର ଦାସଙ୍କ ପୁଅ । କେହି କେହି କହନ୍ତି ଯେ, ଏହି ବଂଶ ବହୁ ବର୍ଷ ପୂର୍ବେ ବିହାରରୁ ଆସି ଓଡ଼ିଶାରେ ରହିଯାଇଥିଲେ । ଆଉ ଓଡ଼ିଶାରେ ରହିବା ପରେ କାଳକ୍ରମେ ସେମାନେ ଓଡ଼ିଶାର କରଣ ସମାଜଭୁକ୍ତ ହୋଇଗଲେ । ବ୍ରଜସୁନ୍ଦର ବାବୁଙ୍କ ଘର ସମ୍ବଦପୁର, ମୌଜା ବଞ୍ଚାରପୁର, ଯାଜପୁର ସବ୍‌ଡ଼ିଭିଜନ, କଟକ । ତାଙ୍କର ପିତାଙ୍କ ଅନ୍ତେ ସେ ହରିବଲ୍ଲଭ ବସୁଙ୍କର ଅଧୀନରେ ରହିଲେ, ଅର୍ଥାତ୍, ହରିବଲ୍ଲଭ ବସୁ ତାଙ୍କର ମୁରବି ହେଲେ । ତାଙ୍କର ପ୍ରଥମ ବିବାହ, ରାୟବାହାଦୂର ନାୟକ, ଡେପୁଟି ମାଜିଷ୍ଟ୍ରେଟଙ୍କର କନ୍ୟା ଇନ୍ଦୁମୁଖୀଙ୍କ ସହିତ ହୋଇଥିଲା । ଇନ୍ଦୁମୁଖୀଙ୍କର ମୃତ୍ୟୁ ପରେ ସେ ରାୟବାହାଦୂର ସୁଦାମ ଚରଣ ନାୟକଙ୍କ କନ୍ୟାଙ୍କୁ ବିବାହ କଲେ ।

ପିଲାଦିନର ଗୋଟିଏ ଘଟଣା । ବ୍ରଜସୁନ୍ଦର ବାବୁଙ୍କର ମା, ଖୁବ୍ ଜାଗ୍ରତ ଭାବରେ ବ୍ରଜସୁନ୍ଦର ବାବୁଙ୍କୁ ଦେଖୁଥିଲେ । ଦିନେ ବ୍ରଜସୁନ୍ଦର ବାବୁ ଗୋଟିଏ ପତ୍ରର ପିକା କରି ସେଥିରେ ନିଆଁ ଲଗାଇ ଟାଣୁଥିଲେ । ତାଙ୍କର ମା, ଯାହା ଦେଖି ଏତେ ଜୋରରେ ତାଙ୍କ ମୁଣ୍ଡକୁ ଚୁଲି ଭିତରେ

ଫୁଟାଇ ଦେଲେ ଯେ, ସେହି ଦିନଠୁଁ ସେ ଜୀବନରେ କେବେହେଲେ ବିଡ଼ି ବା ସିଗାରେଟ୍ ଖାଇ ନାହାନ୍ତି । ଅନ୍ୟାନ୍ୟ ନିଶା ତ ଦୂରର କଥା । ଖାଇବା ଭିତରେ ପାନ ସେ ଖୁବ୍ ଖାଉଥିଲେ । ଏପରିକି ସେ ଦିନକୁ ଦୁଇଶହ ଖିଲପାନ ଖାଉଥିଲେ । ବ୍ରଜସୁନ୍ଦର ବାବୁ ମାଛ ମାଂସ ଖାଉ ନଥିଲେ । କିନ୍ତୁ ଅତିଥି ଅଭ୍ୟାଗତ ତାଙ୍କ ଘରକୁ ଆସିଲେ, ସେ ନିଜେ ଭଲକରି ମାଛ ମାଂସ ରାନ୍ଧି ସେମାନଙ୍କୁ ଖୁଆଉଥିଲେ । ସେ ଭଲ ରାନ୍ଧିଜାଣିଥିଲେ । ବ୍ରଜସୁନ୍ଦର ବାବୁ କଲିକତା ପ୍ରେସିଡେନ୍‌ସି କଲେଜରୁ ବି.ଏ. ପାଶ୍‌କରି, ଏମ୍.ଏ. ଆଉ ଓକିଲାତି ପଢ଼ୁଥିଲେ । ବ୍ରଜସୁନ୍ଦର ବାବୁଙ୍କର ପିତାମହ ହରେକୃଷ୍ଣ ଦାସ ଭାରି ଧର୍ମପରାୟଣ ଥିଲେ । ତାଙ୍କର ନିୟମ ଥିଲା ଯେ, ସେ ପ୍ରତିଦିନ ଏକ ଲକ୍ଷ ଗୁରୁମନ୍ତ୍ର ଜପିବେ । ମାଜିଷ୍ଟ୍ରେଟ ଏକଥା ଶୁଣିପାରି ତାଙ୍କୁ ଆଉ ବସିବାକୁ ଦେଲେନାହିଁ । ଚିଆ କରାଇ କାମ କରାଇଲେ । କିନ୍ତୁ ହରେକୃଷ୍ଣ ଠିଆହୋଇ କାମ କରୁ କରୁ ପ୍ରତିଦିନ ଲକ୍ଷେ ମନ୍ତ୍ର ଜପୁଥିଲେ । ଏହିପରି ଶ୍ରଦ୍ଧା ଥିଲା ତାଙ୍କର, ଦୃଢ଼ତା ଥିଲା ତାଙ୍କର, ଦୃଢ଼ ବିଶ୍ୱାସ ଥିଲା ତାଙ୍କର ।

ବ୍ରଜସୁନ୍ଦର ଦାସ ଭଲ ସାହିତ୍ୟିକ ଥିଲେ । ଇଂରାଜୀଭାଷା ସେ ଭଲ କରି ଜାଣିଥିଲେ । ବ୍ରଜନାଥ ବଡ଼ଜେନାଙ୍କର ସମରତରଙ୍ଗ ପୁସ୍ତକଟିକୁ ସେ ଖୁବ୍ ଭଲ ପାଉଥିଲେ ।

ଓଡ଼ିଶା ତାଙ୍କର ପ୍ରଧାନ ଚିନ୍ତାର ବିଷୟ ଥିଲା । ଓଡ଼ିଶାର ସେବା କରିବା ଏବଂ ଅନବରତ ସେବା କରିବା ତାଙ୍କର ପ୍ରାଣର ଏକମାତ୍ର ଆକାଂକ୍ଷା ଥିଲା । ମହାତ୍ମାଗାନ୍ଧୀ ଓଡ଼ିଶା ବିଷୟରେ ୧୯୨୭ ସାଲରେ ଲେଖିଥିଲେ—

"ଓଡ଼ିଶା ଗୋଟିଏ ଅତି ସୁନ୍ଦର ପ୍ରଦେଶ; କିନ୍ତୁ ଏହା ନିତାନ୍ତ ଦରିଦ୍ର ମୂଲକ, ଏକଥା ବିଚାରିଲେ ପ୍ରାଣରେ ବଡ଼ ବେଦନା ହୁଏ । ଉତ୍କଳଭାଷୀ ଅନ୍ୟମାନଙ୍କର ତୁଳନାରେ କୌଣସି ପ୍ରକାରରେ ବୁଦ୍ଧି ବିଚକ୍ଷଣତାରେ ହୀନ ନୁହନ୍ତି । ସେମାନଙ୍କର ଅପୂର୍ବ ଗୌରବମୟ ଇତିହାସ ଅଛି । ଉତ୍କଳର ବିଚିତ୍ର କାରୁକାର୍ଯ୍ୟପୂର୍ଣ୍ଣ ବିରାଟ ମନ୍ଦିର ସବୁ ଏକ ଅଲୌକିକ ଦୃଶ୍ୟ । ଉତ୍କଳରେ ଜଗତର ନାଥ ଜଗନ୍ନାଥ ବିଦ୍ୟମାନ ରହିଛନ୍ତି । ତାଙ୍କର ଚକ୍ଷୁରେ ତ କୌଣସି ପ୍ରାଣୀ ହୀନ ନୁହେଁ, ଭିନ୍ନ ନୁହେଁ । କିନ୍ତୁ ଏହିଠାରେ ସ୍ୱୟଂ ମହାପ୍ରଭୁଙ୍କର ଆଖି ଆଗରେ ହଜାର ହଜାର ଲୋକ

ପେଟବିକଳରେ ମରୁଛନ୍ତି, ଘରଦ୍ୱାର ଛାଡ଼ି ପଳାଉଛନ୍ତି । ଏକଥା ବର୍ଣ୍ଣିଲା ବେଳେ ହୃଦୟ ଦୁଃଖରେ ଅବଶ ହୋଇଯାଏ । ମୁଁ ବହୁତ ରାଜ୍ୟ ବୁଲିଛି, କୌଣସିଠାରେ ଲୋକଙ୍କର ଏପରି ଦୁର୍ଦ୍ଦଶା ଦେଖିନାହିଁ । ଏତେ ନିରାଶ, ଏତେ ନିଷ୍କ୍ରିୟ ଏତେ ମ୍ରିୟମାଣ ମନୁଷ୍ୟ ମୁଖ ମୁଁ ଆଉ ଦେଖିନାହିଁ ।"

ଏହି ଯେ ଓଡ଼ିଶା, ସେହି ଓଡ଼ିଶାର ସେବାରେ ବ୍ରଜସୁନ୍ଦର ବାବୁ ତାଙ୍କର ସମସ୍ତ ଜୀବନ କଟାଇଥିଲେ । ସେ ଖୁବ୍ ଭଲ ଲୋକ ଥିଲେ । ସେ ଜୀବନରେ କାହାରି ଉପରେ ରାଗି ନାହାନ୍ତି । ତାଙ୍କର କେହି ଶତ୍ରୁ ନଥିଲେ । ସେ ଅଜାତଶତ୍ରୁ ଥିଲେ । ଦେଶର ଅନେକ କାମ ସେ କରି ଯାଇଅଛନ୍ତି । ଦୁଃଖର କଥା, ତାଙ୍କ ବିଷୟରେ କିଛି ଚର୍ଚ୍ଚା ହେଉନାହିଁ । ଲୋକେ ତାଙ୍କୁ ଭୁଲି ଯାଉଛନ୍ତି ।

ବ୍ରଜସୁନ୍ଦର ବାବୁ 'ମୁକୁର ପ୍ରେସ୍' କରିଥିଲେ । 'ମୁକୁର' ମାସିକ ପତ୍ରିକା ବାହାର କରୁଥିଲେ । ସେ ଇଂରାଜୀ ସାପ୍ତାହିକ ପତ୍ରିକା 'ଦ ଓଡ଼ିଆ' (THE ORIYA)ର ସମ୍ପାଦକ ଥିଲେ । ଦେଶମିଶ୍ରଣ ସମ୍ପର୍କରେ ଯେତେ ପୁରୁଣା କଥା, ସେ ସବୁ ଇଂରାଜୀ ବହିରୁ, ଏବଂ ଅନ୍ୟାନ୍ୟ ସ୍ଥାନରୁ ସଂଗ୍ରହ କରି ପୁସ୍ତିକାକାରରେ ଛାପାଉଥିଲେ । ସେ ବଡ଼ ଅମାୟିକ ଥିଲେ । ସଙ୍ଗୀତ, ସାହିତ୍ୟ ଓ କ୍ରୀଡ଼ା ସବୁଥିରେ ତାଙ୍କର ଉତ୍ସାହ ଥିଲା । ସେ ଉତ୍କଳ ସଙ୍ଗୀତ ସମାଜର ସଭାପତି ଥିଲେ । ସେ କଟକ ଆଥ୍‌ଲେଟିକ୍ ଆସୋସିଏସନର ଜଣେ ପ୍ରଧାନ କର୍ମୀ ଥିଲେ । ଉତ୍କଳ ସାହିତ୍ୟରେ ସେ ଜଣେ ପ୍ରଧାନ ରଥୀ ଥିଲେ । ବ୍ୟବସ୍ଥାପକ ସଭ୍ୟମାନଙ୍କରେ ସେ ଜଣେ ସୁନ୍ଦର ବ୍ୟବସ୍ଥାପକ ଥିଲେ । ବିହାର ଓଡ଼ିଶା କାଉନ୍‌ସିଲରେ, ଇମ୍ପିରିଏଲ ଲେଜିସଲେଟିଭ୍ କାଉନସିଲରେ, ଓଡ଼ିଶା ଆସେମ୍ବ୍ଲିରେ, ସେ ତାଙ୍କର ଦାନ ଯଥେଷ୍ଟ ଦେଇ ଯାଇଛନ୍ତି । ବ୍ରଜସୁନ୍ଦର ବାବୁଙ୍କର ଗୋଟିଏ ଆଡ୍‌ଡା ଥିଲା । ପଣ୍ଡିତ ଗୋପବନ୍ଧୁ ଦାସ୍, ଗୋଦାବରୀଶ ମିଶ୍ର, ନୀଳକଣ୍ଠ ଦାସ ଏବଂ ପୁରୀ, ସମ୍ବଲପୁର, ଫୁଲଝର ପ୍ରଭୃତିରୁ ଉତ୍କଳ ସମ୍ମିଳନୀକୁ ଆସୁଥିବା ପ୍ରତିନିଧିମାନଙ୍କର ତାଙ୍କ ଘର ଥିଲା ଘର । ସେ କଂଗ୍ରେସରେ କେବେ ଯୋଗ ଦେଇ ନଥିଲେ । ଓଡ଼ିଶାପାଇଁ ତାଙ୍କ ପ୍ରାଣ ସବୁବେଳେ ବ୍ୟସ୍ତ ଥିଲା ।

ଫିଲିପ୍-ଡଫ୍ କମିଟି ବେଳେ ସେ ମୋତେ ଜୟପୁର ପଠାଇଥିଲେ । ସାଇମନ୍ କମିସନକୁ ଭାରତର ଭିନ୍ନ ଭିନ୍ନ ଅଞ୍ଚଳରେ ବୟକଟ୍ କରୁଥିବା-

ବେଳେ, ବ୍ରଜସୁନ୍ଦର ବାବୁ ଓଡ଼ିଶା ପକ୍ଷରୁ ସାଇମନ୍ କମିସନକୁ ଓଡ଼ିଶାର ଦେଶମିଶ୍ରଣ ଦାବୀ ଦେବା, ନାନା ଲୋକଙ୍କର ସାହାଯ୍ୟ ନେଇ, ସ୍ମାରକ ପତ୍ରମାନ ପଠାଇଥିଲେ । ସେ ଉତ୍କଳୀୟ ୟଙ୍ଗମେନ୍ସ ଆସୋସିଏସନରେ ଜଣେ ବଡ଼ପଣ୍ଡା ଥିଲେ ।

ବ୍ରଜସୁନ୍ଦର ବାବୁଙ୍କର ପ୍ରଥମ ସ୍ତ୍ରୀ ମରିଯିବା ପରେ ସେ ସେତେବେଳେ ସୁଦାମଚରଣ ନାୟକଙ୍କ କନ୍ୟାକୁ ବିବାହ କରିଥିଲେ, ସେହି ସମୟରେ କରଣ ସମାଜରେ ଭାରି ଗଣ୍ଡଗୋଳ ସୃଷ୍ଟି ହୋଇଥିଲା । କାରଣ ବ୍ରଜସୁନ୍ଦର ବାବୁ ଥିଲେ କରଣ ସାଆନ୍ତ, ଆଉ ସୁଦାମବାବୁ ଥିଲେ ଖଣ୍ଡାୟତ । ସେ ସମୟରେ ରାୟବାହାଦୁର ଭିକାରୀଚରଣ ପଟ୍ଟନାୟକ "କରଣ ସାଆନ୍ତଙ୍କ ଛନ୍ଦ" ନାମକ ଏକ ପୁସ୍ତିକା ପ୍ରକାଶ କରିଥିଲେ । ସେଥିରେ ଲେଖା ଥିଲା—

'ସାଆନ୍ତିଆ ବାହା,
କଉଡ଼ି କଥାଟି ମୂଳ ।
କଉଡ଼ି ମିଳିଲେ ଜାତି ଲୋଡ଼ାନାହିଁ,
ଗୃହୁଣୀ ମଣ୍ଡିବେ କୁଳ ।"

ଏହା ୧୯୧୫ ସାଲର କଥା ।

ବ୍ରଜସୁନ୍ଦର ବାବୁ ଓଡ଼ିଶା ଆସେମ୍ବିଲିରେ ଖ୍ରୀ ୧୯୩୮ରେ ପ୍ରଜାସତ୍ତ୍ୱ ଆଇନ ସେନି ଯାହା କହିଥିଲେ, ତାହାର ଟିକିଏ ସୂଚନା ଏଠାରେ ଦେଉଅଛୁ ।

"ମୁଁ ସ୍ୱୀକାର କରୁଛୁ ଯେ ଓଡ଼ିଶା ପ୍ରଜାସତ୍ତ୍ୱ ଆଇନର ଆମୂଳ ପରିବର୍ତ୍ତନ ଦରକାର । କିନ୍ତୁ ଏ ଯେଉଁ ଆଇନ କରୁଛ, ଏହା ସମସ୍ତ ଛୋଟ ଛୋଟ ଜମିଦାରମାନଙ୍କର ଏବଂ ହଜାର ହଜାର ବାଜ୍ୟାପ୍ତିଦାର ଓ ବାହେଲଦାରମାନଙ୍କର ସର୍ବନାଶ କରିବ ।"

ଏହାଥିରେ ସେ ପୁଣି କହିଥିଲେ, "ଶାସନ ଆଇନ ତ କ'ଣ ଠିକ୍ ଭୁଲ କ'ଣ, ଏ ବିଷୟରେ ଆମର ବୁଦ୍ଧିକୁ ନେଇଯାଇ ନାହିଁ ? ତେଣୁ ଦଳର ସଂଖ୍ୟା ବଳରେ ଆମର ଅଳ୍ପସଂଖ୍ୟକ ଦଳକୁ ଯଦି ମାଡ଼ି ମକଚି କରିଯିବ, ତେବେ ଆମେ ତୁମକୁ ଦୋଷ ଦେବୁ । ମୋର ସରକାର-ପକ୍ଷ-ଦଳକୁ ଅନୁରୋଧ ଯେ ସେମାନେ ପୁନର୍ବିଚାର କରନ୍ତୁ ।"

ବ୍ରଜସୁନ୍ଦର ବାବୁ କବି ମଧ୍ୟ ଥିଲେ । ତାଙ୍କର କବିତାର ଗୋଟିଏ ନମୁନା ଏଠାରେ ଦେଉଅଛୁ—

"ରହିବ ତୁମ୍ଭଙ୍କୁ ଗୃହିଁ, ହେ ନାଥ,
ରହିବ ତୁମ୍ଭଙ୍କୁ ଗୃହିଁ,
କେବେହେଲେ ବାରେ, ଯୁଗ ଯୁଗାନ୍ତରେ
ତୁମ୍ଭ ଭେଟ ହେବାପାଇଁ ହେ । ଘୋ ।
ସୁମେରୁ ଅଚଳ ବୁଡ଼ିବ ଅତଳେ
ସାଗର ହେବ ସାହାରା,
ସାହାରାରେ ପୁଣି ଫୁଟିବ କମଳ
ଭ୍ରମର ଭ୍ରମିବେ ଧାଇଁ ହେ ।
ଦିବାକର ହେବେ ସୁଧାଂଶୁ-ଶୀତଳ
ତାରା ବର୍ଷିବେ ଖରା,
ଧରା ସାରା ହେବ ନନ୍ଦନ କାନନ
କଣ୍ଟକ ନଥିବ ତହିଁ ହେ ।
କାଳ ଆବର୍ତ୍ତନେ କଳି ଯିବ ଚଳି
ରହିବ ସତ୍ୟ ଶାସନ,
ଦୁଃଖ, ଶୋକ, ଦୈନ୍ୟ, ବିଷାଦ, କାଳିମା,
ଲେଶଟି ରହିବ ନାହିଁ ହେ—
ଗୁରୁ ଲଘୁ ସୂକ୍ଷ୍ମ ବାୟୁବ ମଣ୍ଡଳେ
ଅବା ପଞ୍ଚଭୂତ ମେଳେ
ଆତ୍ମାଟି ମୋହର ଯହିଁ ବୁଲୁଥାଉ,
ଥିବଟି ତୁମ୍ଭଙ୍କୁ ଗୃହିଁ ହେ ।"

ଏହି ବ୍ରଜସୁନ୍ଦ କେବେ କାହାକୁ ଗାଳିଦେଇ ନାହାନ୍ତି, ଶତ୍ରୁ ବୋଲି କେବେ କାହାକୁ ଭାବି ନାହାନ୍ତି, ଅନିଷ୍ଟକାରୀର ମଧ୍ୟ କେବେ ଅନିଷ୍ଟ କରିନାହାନ୍ତି ।

ତାଙ୍କର ଦ୍ୱିତୀୟ ବିବାହରେ ସେ କୌଣସି ଯାନବାହାନ ବ୍ୟବହାର କରିନାହାନ୍ତି । ଚାଲିକରି ସେ ବିବାହକୁ ଯାଇଥିଲେ । ସେ ଅତି

ଆଡ଼ମ୍ବରହୀନ ବ୍ୟକ୍ତି ଥିଲେ । ଅତ୍ୟନ୍ତ ପରାର୍ଥ-ପରାୟଣ ଥିଲେ, ଅନେକ ଲୋକଙ୍କୁ ସାହାଯ୍ୟ କରୁଥିଲେ । 'ସତ୍ୟବାଦୀ ସ୍କୁଲ' ସ୍ଥାପନାରେ ପଣ୍ଡିତ ଗୋପବନ୍ଧୁଙ୍କୁ ସାହାଯ୍ୟ କରୁଥିଲେ । ତାଙ୍କର ଗୋଟିଏ ଲେଖା ଦେଖି ସାର୍ ତେଜବାହାଦୁର ସାପ୍ରୁ କହିଥିଲେ, 'ଏହାକୁ ଯିଏ ଲେଖିଛନ୍ତି, ସେ ଜଣେ ବିଚକ୍ଷଣ ଓକିଲ ହୋଇଥିବେ ।' ଏଥିରୁ ଜଣାପଡ଼େ ବ୍ରଜସୁନ୍ଦର ଦାସଙ୍କର ପାଣ୍ଡିତ୍ୟ ।

ଏହି ମହାତ୍ମାଙ୍କର ଜୀବନୀ ଆଲୋଚନା କରିବାବେଳେ ଅନେକ କଥା ମନରେ ପଡ଼ୁଛି । ବ୍ରଜସୁନ୍ଦର ବାବୁ ଜମିଦାର ଥିଲେ । ତାଙ୍କର ବଡ଼ ଜମିଦାରୀ ଥିଲା, ସେ ଇଚ୍ଛା କରିଥିଲେ ସୁଖରେ ବିନା ପରିଶ୍ରମରେ, ବିନା ଚେଷ୍ଟାରେ, ଘରେ ବସି, ଗୋଡ଼ ଉପରେ ଗୋଡ଼ ପକାଇ, ଜୀବନ କଟାଇଦେଇ ପାରିଥାନ୍ତେ । କିନ୍ତୁ ସେ ତାହା କରି ନଥିଲେ ।

କଟକ ମେଡ଼ିକାଲରେ ସୁଧୀର କର ନାମରେ ଜଣେ ଛାତ୍ର ଅନଶନ ଆରମ୍ଭ କଲେ । ସେ ଅନଶନ ଭାଙ୍ଗିବାକୁ ରାଜି ହେଲେ ନାହିଁ । ଛାତ୍ରମାନେ ଆସି ବ୍ରଜସୁନ୍ଦର ବାବୁଙ୍କୁ ଏହି କଥା କହିଲେ, ଏବଂ ତାଙ୍କୁ ଅନୁରୋଧ କଲେ । ଛାତ୍ରମାନେ ଡରି ଡରି ବ୍ରଜସୁନ୍ଦର ବାବୁଙ୍କ ପାଖକୁ ଯାଇଥିଲେ । କାରଣ ସେ ବଡ଼ଲୋକ ଥିଲେ । କିନ୍ତୁ ବ୍ରଜସୁନ୍ଦର ବାବୁ ମେଡ଼ିକାଲକୁ ଯାଇ ସୁଧୀର କରଙ୍କ ସହିତରେ ସାଙ୍ଗେ ସାଙ୍ଗେ ଦେଖା କଲେ । ବ୍ରଜସୁନ୍ଦର ବାବୁ ଏ ପିଲା ପାଖକୁ ତିନିଦିନ ଧରି ବରାବର ଯାଉଥିଲେ ଏବଂ ତାଙ୍କର ଅନଶନ ଛଡ଼ାଇ ଥିଲେ । ସୁଧୀର କରଙ୍କ ଘର ମୟୂରଭଞ୍ଜ ।

ଶେଷ ଜୀବନରେ, ଯେତେବେଳେ ପୃଥିବୀ ଯୁଦ୍ଧ ଚାଲିଥିଲା, ସରକାର ତରଫରୁ ସେ ସମର-ସଙ୍ଗୀତ ଅଫିସର ହୋଇଥିଲେ— ଅଫିସ୍ ମଧ୍ୟ ଚକଡ଼ତରେ, ତାଙ୍କର ଘରେ, ହୋଇଥିଲା । ବ୍ରଜସୁନ୍ଦର ବାବୁ ନିଜେ ଖୁବ୍ କବିତା ଲେଖୁଥିଲେ । ସେ ସଙ୍ଗୀତ ଚର୍ଚ୍ଚା ମଧ୍ୟ ଖୁବ୍ କରୁଥିଲେ । ତାଙ୍କର ଜମିଦାରୀର ତହସିଲଦାର ଭାଗବତ ବାବୁ ବ୍ରଜବାବୁଙ୍କ ସହିତରେ ଯେଉଁ ଚିଠିପତ୍ର ବ୍ୟବହାର କରୁଥିଲେ ତାହା ଅଧିକାଂଶ ପଦ୍ୟରେ ହିଁ ହେଉଥିଲା । କାରଣ; ବ୍ରଜବାବୁ ଭାଗବତ ବାବୁଙ୍କୁ ପଦ୍ୟରେ ହିଁ ଚିଠି ଲେଖୁଥିଲେ ।

ବ୍ରଜବାବୁ ବେଷେଇରେ ବଡ଼ ଆନନ୍ଦ ପାଉଥିଲେ । ସେ ବେଷେଇରେ ଥିବାବେଳେ, ମଧୁବାବୁ (ଏମ୍. ଏସ୍. ଦାସ) ଆସିଲେ ମଧ୍ୟ ଯଦି ଶୁଣନ୍ତି ଯେ ବ୍ରଜବାବୁ ବେଷେଇରେ ଅଛନ୍ତି, ତାହାହେଲେ ସେ ଫେରିଯାଆନ୍ତି ଏବଂ କହନ୍ତି, 'ବ୍ରଜଙ୍କୁ କହିବ, ମୁଁ ପୁଣି ଆସିବି ।' ଦୁଇ ଦୁଇଟା ପୂଝାରୀ ଓ ଦୁଇ ଦୁଇଟା ଚାକର ଥିଲେ ବି, ବ୍ରଜବାବୁ ନିଜେ, ନିଜ ହାତରେ ବେଷେଇ କରିବେ ଏବଂ ବେଷେଇ କରିବାବେଳେ, କାଗଜିଲେମ୍ବୁ ଆଣ, ଦି'ଟା ଗୋଲମରିଚ ଅଣ, ପିଆଜ ଦି'ଟା ସରୁ ସରୁ କରି କାଟ, ଦି'ଟା ପୋସ୍ତକଦାନା ଆଣ, ଏହିପରି ବରାବର ସ୍ରୋତ ଚାଲୁଥିଲା । ତାଙ୍କର ବନ୍ଧୁ, ବାଲ୍ୟବନ୍ଧୁ, ଯୌବନର ବନ୍ଧୁ, ସହାଧ୍ୟାୟୀ ଭାଗବତଚନ୍ଦ୍ର ଦାସଙ୍କୁ ସେ ତାଙ୍କର ନାଏବ ତହସିଲଦାର କରିଥିଲେ । ମଝିରେ କେତେକ ଲୋକଙ୍କର ଖଚ, ରଚରେ ଭାଗବତ ବାବୁଙ୍କୁ ଅନ୍ତର କରି ଦିଆହୋଇଥିଲା । ଘନଶ୍ୟାମ ମହାପାତ୍ର ମଝିରେ ବାରବର୍ଷ ତହସିଲଦାର ହୋଇ ରହିଲେ । ସେ ବ୍ରଜବାବୁଙ୍କର ଜମିଦାରୀରେ ରହି ଅନେକ ଟଙ୍କା ଅର୍ଜ୍ଜନ କରିଥିଲେ । କିନ୍ତୁ ଭାଗବତବାବୁ ତାଙ୍କର ଜମିଦାରୀରେ ୨୫ବର୍ଷ ଥିଲେ ମଧ୍ୟ କିଛି ବିଶେଷ ଅର୍ଥ ଅର୍ଜ୍ଜନ କରିନାହାନ୍ତି । ବାରବର୍ଷ ପରେ, ସନ ୧୩୪୩, ଭେଟି ସଂଗ୍ରହ ବେଳେ ବ୍ରଜସୁନ୍ଦରବାବୁ ପୁଣି ଭାଗବତବାବୁଙ୍କୁ ଡାକିଲେ । କାରଣ, ତାଙ୍କଦ୍ୱାରା ମାଳବାଲଙ୍କର ଭେଟି ତାଙ୍କୁ ମିଳିବ । ତା'ପରେ ବ୍ରଜସୁନ୍ଦରବାବୁ ଭାଗବତ ବାବୁଙ୍କୁ ପୁଣି ତହସିଲଦାର କରି ରଖିଲେ । ଏଥର ଭାଗବତବାବୁ କହିଲେ "ମୋତେ ଯଦି ଆପଣ ସ୍ୱାତନ୍ତ୍ର୍ୟ ଦେବେ, ମୁଁ ଆପଣଙ୍କର ଜମିଦାରୀରେ ଚାକିରୀ କରିବି । ଆପଣଙ୍କର ଯେତେ ଟଙ୍କା ଦରକାର ତାହା କହନ୍ତୁ, ମୁଁ ମାସିକ ସେତିକି ଟଙ୍କା ଆପଣଙ୍କର ଖର୍ଚ୍ଚ ସକାଶେ ଦେଉଥିବି । ବାକୀ ଟଙ୍କା ଆପଣଙ୍କର ୯୭ ହଜାର ଋଣ ପରିଶୋଧ ଦିଗରେ ମଜୁରୀ ଦେଉଥିବି ।" ବ୍ରଜବାବୁ କହିଲେ, ମୋର ମାସକୁ ୨୦୦ଟଙ୍କା ଦରକାର । କିନ୍ତୁ ତାହା କି ହୁଏ ? ଭାଗବତବାବୁ କହିଲେ, ଦୁଇଶହ ଟଙ୍କାରେ ଆପଣଙ୍କର ଚଳିବ ନାହିଁ । ମୁଁ ମାସିକ ଆପଣଙ୍କୁ ୫୦୦ ଟଙ୍କା କରି ଦେବି । କିନ୍ତୁ ବ୍ରଜବାବୁ ୫୦୦ ଟଙ୍କାରେ କ'ଣ ଚଳି ପାରନ୍ତି ? ତେଣୁ ପ୍ରତିମାସ ୫୦୦ ଟଙ୍କାରୁ ଅଧିକ ୬୦୦, ୭୦୦, ୮୦୦, ୧୦୦୦ ଏପରି ଦେବାକୁ ପଡ଼ିଲା । ତେଣୁ ଭାଗବତ

ବାବୁ ସନ ୧୩୪୮ ସାଲରେ ବ୍ରଜବାବୁଙ୍କୁ ପରାମର୍ଶ ଦେଲେ ଯେ ତାଙ୍କର ଜମିଦାରୀକୁ କୋର୍ଟ ଅବ୍ ଓ୍ୱାର୍ଡସ୍ ହାତରେ ଦେଲେ ଭଲ ହେବ ।

ବ୍ରଜସୁନ୍ଦର ବାବୁ ସଙ୍ଗୀତ ବିଦ୍ୟା କାହାଠାରୁ ଶିଖି ନଥିଲେ ମଧ୍ୟ ସଙ୍ଗୀତଜ୍ଞମାନଙ୍କ ସଙ୍ଗରେ ରହି ସେ ତୁବ୍ଲ ତାବଲ ବଜାଇ ପାରୁଥିଲେ । ଗୋକୁଳଚନ୍ଦ୍ର, ହରିଚନ୍ଦନ ଏବଂ ବାଲେଶ୍ୱରର ଜଦୁନାଥ ନାୟକ ଯେତେବେଳେ କଟକ ଆସନ୍ତି, ତାଙ୍କର ଘରେ ରହନ୍ତି ଏବଂ ସେତେବେଳେ ଖୁବ୍ ଗାଣ ବଜାଣ ହୁଏ । ଏହାପରେ ଏମାନଙ୍କର ମିଳନରେ ରହି ଧ୍ରୁପଦ, ଚଉତାଳ ଇତ୍ୟାଦି ତୁବ୍ଲ ତାବଲରେ ଭଲ ବଜାଇ ପାରୁଥିଲେ ।

ଶରତ୍ ବାବୁଙ୍କର ଝିଅର ବାହାଘରକୁ ସେ ତାଙ୍କ ଘରକୁ ଯାଇ ତିନିଦିନ ରହି, ଘରର ମୁରବି ଭଳିଆ ବାହାଘରର ସବୁ କଥା ଦେଖିଥିଲେ ।

ବ୍ରଜସୁନ୍ଦରବାବୁ କଟକ ରେଭେନ୍ସା କଲେଜରେ ଏଫ୍. ଏ ପାଶ୍ କରି କଲିକତା ପ୍ରେସିଡେନ୍ସି କଲେଜରେ ବି.ଏ. ପଢ଼ିଲେ । ହରିବଲ୍ଲଭ ବାବୁ ସେତେବେଳେ ତାଙ୍କର ମୁରବି । ହରିବଲ୍ଲଭ ବାବୁଙ୍କର ପୁଅ ନ ଥିଲେ । ସୁତରାଂ ସେ ବ୍ରଜସୁନ୍ଦର ବାବୁଙ୍କୁ ନିଜର ପୁଅ ଭଳିଆ କରିଥିଲେ । ସେଥିପାଇଁ ବ୍ରଜସୁନ୍ଦର ବାବୁଙ୍କର ମଙ୍ଗଳ ମନାସି ସେ ତାଙ୍କୁ ଡେପୁଟି ମାଜିଷ୍ଟ୍ରେଟ୍ କରିବା ପାଇଁ ଚେଷ୍ଟା କଲେ । କିନ୍ତୁ ବ୍ରଜସୁନ୍ଦର ବାବୁ ୮।୧୦ ଦିନ ଲୁଚିଲେ । ଆଉ ଦେଖା ଦେଲେ ନାହିଁ । ବ୍ରଜବାବୁଙ୍କର ଗୁଲାମି କରିବାର ଇଚ୍ଛା ନଥିଲା । ସେ ଦେଶପାଇଁ ନିଜର ଜୀବନ ନିୟୋଗ କରିବାକୁ ଠିକ୍ କରିଥିଲେ ।

ଏହିଠାରେ ଗୋଟିଏ କଥା ମନେ ପଡ଼ୁଛି । ବ୍ରଜସୁନ୍ଦର ବାବୁଙ୍କର ଚେହେରା ଅତି ସୁନ୍ଦର ଥିଲା । ରାସବିହାରୀ ମଠରେ ବଡ଼ ବାବାଜୀ ବ୍ରଜସୁନ୍ଦରଙ୍କୁ ଦିନେ ଦେଖି ଅତ୍ୟନ୍ତ ମୁଗ୍ଧ ହେଲେ । ବ୍ରଜସୁନ୍ଦର ବାବୁଙ୍କର ଠାକୁର ସେବା, ଗୁରୁଜନ ଭକ୍ତି ଇତ୍ୟାଦି ଖୁବ୍ ଥିଲା । ବଡ଼ ବାବାଜୀ ବ୍ରଜସୁନ୍ଦର ବାବୁଙ୍କୁ ସେଦିନ ଗୌରାଙ୍ଗ ରୂପରେ ସଜାଇଲେ । ଏହିପରି ଅବସ୍ଥାରେ ବ୍ରଜସୁନ୍ଦର ମୂର୍ଚ୍ଛିତ ହୋଇଗଲେ । ଏହା ବୋଧହୁଏ ଖ୍ରୀ: ୧୯୦୬ର କଥା । ବ୍ରଜସୁନ୍ଦର ବାବୁ ଖୁବ୍ ଭକ୍ତିପରାୟଣ ଲୋକ ଥିଲେ । ସେ ପ୍ରକୃତ ବୈଷ୍ଣବ ଥିଲେ । କିନ୍ତୁ ସେ ବୈଷ୍ଣବର ଭେକ କେବେ

ନେଇ ନଥିଲେ । ଲୋକେ ଦେଖି ଯେପରି ଜାଣି ନପାରିବେ, ସେଥିପାଇଁ ସେ ବୈଷ୍ଣବର ଭେକ ନେଇ ନଥିଲେ ।

ବ୍ରଜସୁନ୍ଦର ବାବୁ କଲିକତାରେ ପଢ଼ୁଥିବା ଯୋଗୁଁ ତାଙ୍କର ଅନେକ ବଙ୍ଗାଳୀ ସାଙ୍ଗ ଥିଲେ । କଲିକତାରୁ ଅନେକ ବଙ୍ଗାଳୀ ତାଙ୍କ ଘରକୁ ପ୍ରତି ମାସରେ ଆସନ୍ତି । କେବଳ ସେମାନଙ୍କପାଇଁ ବ୍ରଜସୁନ୍ଦର ବାବୁଙ୍କର ମାସକୁ ତିନିଶହ, ଚାରିଶହ ଟଙ୍କା ଖର୍ଚ୍ଚ ହେଉଥିଲା ।

ବ୍ରଜସୁନ୍ଦର ବାବୁଙ୍କର ମାସକୁ ୧୨୦୦, ୧୩୦୦ ଟଙ୍କା ଦରକାର ହେଉଥିଲା । ସେତିକି ଟଙ୍କା ସେ ପାଇଲେ ଆଉ କିଛି କହନ୍ତି ନାହିଁ । ବର୍ଷକୁ ଥରେ କଟକରୁ ଯାଜପୁରକୁ (ସଦୃଦପୁର) ତାଙ୍କର ଜମିଦାରୀ ଦେଖିବାକୁ ଯାଆନ୍ତି । ସେ କାହାକୁ କିଛି କହନ୍ତି ନାହିଁ । ଖ୍ରୀ: ୧୯୦୮ର କଥା । ଯାଜପୁର ଅଞ୍ଚଳରେ ଯୋର ହେଲା । ବ୍ରଜସୁନ୍ଦର ବାବୁ ଭାଗବତ ବାବୁଙ୍କୁ ଧରି ତିନି ଚାରି ଦିନ ନଦୀରେ ବୁଲିଲେ । ସାଙ୍ଗରେ ଚାକର ବାକର କେହି ନାହାନ୍ତି । ଯାହାଙ୍କର ପ୍ରତିଦିନ ଚାରି ଚାରିଟା ଚାକର ନହେଲେ ନଚଳେ, ସେହି ବ୍ରଜସୁନ୍ଦର ବାବୁ ଏହି ବଡ଼ି ସମୟରେ, ତିନି ଚାରି ଦିନ ବିନା ଚାକରରେ କଟାଇଥିଲେ ।

ଉତ୍କଳ ସମ୍ମିଳନୀ ପାଇଁ ସେ ଆଜୀବନ ପ୍ରାଣପଣ ଚେଷ୍ଟା କରିଥିଲେ । ସେଥିପାଇଁ ସେ ୭।୮ ହଜାର ଟଙ୍କା ଖର୍ଚ୍ଚ କରି ଅନେକ ଛୋଟ ଛୋଟ ପୁସ୍ତିକା ଛପାଇ ଥିଲେ । ଉତ୍କଳ କିପରି ଗୋଟିଏ ସ୍ୱତନ୍ତ୍ର ପ୍ରଦେଶ ହେବ, ଉତ୍କଳର ସତ୍ତ୍ୱ କିପରି ଭାରତବର୍ଷରେ ଅନ୍ୟାନ୍ୟମାନଙ୍କ ଦ୍ୱାରା ଅନୁଭୂତ ହେବ, ସେଥିପାଇଁ ତାଙ୍କର ପ୍ରାଣ ସବୁବେଳେ ଛଟପଟ ହେଉଥିଲା । ମଧୁବାବୁଙ୍କ ସଙ୍ଗେ ଓ ତାଙ୍କ ପରେ ବ୍ରଜସୁନ୍ଦରବାବୁ ଉତ୍କଳ ସମ୍ମିଳନୀର ଏକମାତ୍ର ଅନନ୍ୟ କର୍ମୀ ଥିଲେ ।

ପଣ୍ଡିତ ଗୋପବନ୍ଧୁ ଦାସ ତାଙ୍କର ଅତି ଅନ୍ତରଙ୍ଗ ବନ୍ଧୁ ଥିଲେ । ଗୋପବନ୍ଧୁ ବାବୁ କଟକ ଆସିଲେ ବ୍ରଜସୁନ୍ଦର ବାବୁଙ୍କ ଘରେ ରହୁଥିଲେ । ବ୍ରଜସୁନ୍ଦର ଓ ଗୋପବନ୍ଧୁଙ୍କ ଭିତରେ ଅଭେଦ ପ୍ରୀତି ଥିଲା ।

ସତ୍ୟବାଦୀ ମନ୍ଦିର ତ୍ରିମୂର୍ତ୍ତି ରୂପେ ଗୋପବନ୍ଧୁ ଦାସ, ସତ୍ୟବାଦୀ ଓ ତା, ଓ ବ୍ରଜସୁନ୍ଦର ଦାସ ଏକ ସାଙ୍ଗରେ ଅନେକ ଦିନ ଥିଲେ ।

ବ୍ରଜସୁନ୍ଦର ବାବୁଙ୍କର ଜୀବନର ଇତିହାସ ବାସ୍ତବିକ ବଡ଼ ବିଚିତ୍ର । ତାଙ୍କର ପିତା ଶ୍ୟାମସୁନ୍ଦର ଦାସ ନିଜେ ପୋଷ୍ୟପୁତ୍ର ହୋଇ ଆସିଥିଲେ ।

ଶ୍ୟାମ ଦାସ ଠାକୁରଙ୍କ ପାଖରେ ବରବର ପ୍ରାର୍ଥନା କରୁଥିଲେ, 'ହେ ପ୍ରଭୁ, ମୋତେ ପୁଅ ନ ଦେଲ ନାହିଁ, ଗୋଟିଏ କାଣୀ ଝିଅ ଭଲ ଦିଅନ୍ତ !'' ସତକୁ ସତ, ଅନେକ ବର୍ଷ ପରେ, ବଳମ୍ବରେ ଶ୍ୟାମସୁନ୍ଦର ଦାସଙ୍କର ଗୋଟିଏ କାଣୀ ଝିଅ ଜାତ ହେଲା । ତାହାପରେ କଣ୍ଟାଶିଆ ଦଧିବାମନପୁରରେ ଜଣେ ସିଦ୍ଧ ବାବାଜୀଙ୍କର ଆଶୀର୍ବାଦରେ ବ୍ରଜସୁନ୍ଦର ବାବୁଙ୍କର ଜନ୍ମ । ଏହି ସିଦ୍ଧ ବାବାଜୀ ତିନ ଦିନ ତିନି ରାତି ଧରି ଅନବରତ ନାମ ଜପ କରୁଥିବାର ବହୁଲୋକେ ସେ ସମୟରେ ଦେଖିଛନ୍ତି । ଏହି ସିଦ୍ଧ ବାବାଜୀଙ୍କୁ ନେଇ ଶ୍ୟାମସୁନ୍ଦର ଦାସ ସମୁଦପୁରଠାରେ ବହୁ ବାର ସଙ୍ଗ କଲେ । ସେହି ସିଦ୍ଧ ବାବାଜୀ ଶେଷ ଥର ସଙ୍ଗରେ କହିଲେ, ଏଥର ଗୋଟିଏ ସୁପୁତ୍ର ହେବ । ସେହି ପୁତ୍ର ହେଉଛନ୍ତି ବ୍ରଜସୁନ୍ଦର ଦାସ ।

ବ୍ରଜବାବୁଙ୍କର ଆଠବର୍ଷ ବୟସ ବେଳେ ତାଙ୍କର ପିତାଙ୍କର କାଳ ହୋଇଗଲା । ତେଣୁ ମା'ଙ୍କର ଅଭିଭାବକତ୍ୱରେ ବ୍ରଜସୁନ୍ଦର ବାବୁ ରହିଲେ । ବ୍ରଜସୁନ୍ଦର ବାବୁଙ୍କର ମା ଜଣେ ଅଦ୍ଭୁତ ଧରଣର ନାରୀ ଥିଲେ । ତାଙ୍କର ସ୍ୱାମୀ ମରିଗଲା ପରେ ସେ ଦେହରେ ଆଉ କେବେ ତେଲ ଲଗାଇ ନାହାନ୍ତି, କାମ୍ବା ଚୁଟି କେବେ ବାନ୍ଧି ନାହାନ୍ତି । ସ୍ୱାମୀଙ୍କର ମୃତ୍ୟୁର ଠିକ୍ ଏକ ବର୍ଷ ପରେ ତାଙ୍କର ମୃତ୍ୟୁ ହେଲା ।

ତଣାଶିଆ ପରଗନା (ବ୍ରଜସୁନ୍ଦର ବାବୁଙ୍କର ଜମିଦାରୀ) ଆଠକୋଶ । ଏହି ଜମିଦାରୀ ଯେତେବେଳେ ମୁରବି-ଶୂନ୍ୟ ହେଲା, ସେତେବେଳେ ନାଏବ ଏବଂ ନିତ୍ୟାନନ୍ଦ ମହାନ୍ତି ତହସିଲଦାର ଚେଷ୍ଟା କରି ଇଂରାଜ ସାହେବଙ୍କ ନିକଟରେ ହରିବଲ୍ଲଭ ବାବୁଙ୍କୁ (ସେତେବେଳେ ସେ କଟକର ବଡ଼ (ଡେକିଲ) ମହାଫିସ୍ କରାଇଲେ । । ତା'ପରେ ଅନ୍ୟାନ୍ୟ କର୍ମଗୃହୀ ରଖି ହରିବଲ୍ଲଭ ବାବୁ ଉକ୍ତ ଜମିଦାରୀ ବୁଝାସୁଝା କଲେ ।

ଏହିଠାରେ ବ୍ରଜସୁନ୍ଦର ଦାସଙ୍କର ପିତାମହ ହରେକୃଷ୍ଣ ଦାସଙ୍କ ବିଷୟରେ ଆଉ ଟିକେ କହିବା ଦରକାର । ସେ ସେତେବେଳେ କେବଳ ଓଡ଼ିଆ ଓ ଫାର୍ସି ପାଠ ପଢ଼ି ଓଡ଼ିଶା ଟ୍ରିବ୍ୟୁଟାରୀ ମାହାଲର ସୁପରିନ୍‌ଟେନ୍‌ଡେଣ୍ଟ ହୋଇ ମାସକୁ ୭୫୦ ଟଙ୍କା ବେତନ ପାଉଥିଲେ । ତାଙ୍କର ଫାର୍ସି ଦେବାର କ୍ଷମତା ମଧ୍ୟ ଥିଲା । ପ୍ରତିଦିନ ସକାଳୁ ଉଠିଲେ ପ୍ରଥମେ ସେ ଅମୁହାଁ ବାକ୍ସରେ ଗୋଟିଏ ଟଙ୍କା ପକାଉଥିଲେ । ଏହି

ହରେକୃଷ୍ଣ ବାବୁ ତାଙ୍କର ଗୁରୁଦେବଙ୍କୁ ତାଙ୍କର ଜମିଦାରୀରୁ କେତେକ ଅଂଶ ଦେଇଥିଲେ । ତାଙ୍କ ଗୁରୁଦେବଙ୍କ ପାଇଁ ମଠ ଆଉ ଦେଉଳ ମଧ୍ୟ କରାଇ ଦେଇଥିଲେ । ଏହି ହରେକୃଷ୍ଣ ବାବୁ ସତ୍ୟବାଦୀ ଦେଉଳ ମଧ୍ୟ ତୋଳାଇଥିଲେ । ହରେକୃଷ୍ଣ ବାବୁଙ୍କ ନିକଟରେ ଜଣେ ଭାଗବତୀ ପଣ୍ଡିତ ସର୍ବଦା ଥାଆନ୍ତି । ସେ ସବୁବେଳେ ମନେ ମନେ ଇଷ୍ଟ ନାମ ଉଚ୍ଚାରଣ କରୁଥିଲେ । ତାଙ୍କର ଗୋଟିଏ ତାମଯାନ୍ ଥିଲା । ଗୃହରେ ଗଉଡ଼ ତାଙ୍କୁ କ'ାନ୍ଧେଇବା ପାଇଁ ସବୁବେଳେ ଥିଲେ । ସେ ସକାଳୁ ଉଠି ତାମ୍‌ଯାନ୍‌ରେ ବସି ଗାଁ ସାକ ବୁଲି ଆସିବେ । ଜଣେ କରଣପିଲା ସାଙ୍ଗରେ ଥିବ ସେ ସବୁବେଳେ ବୈଷ୍ଣବ ବନ୍ଦନା, ହରିନାମ କରୁଥିବ । ସେହି ତାମ୍‌ଯାନରେ ବୁଲୁ ବୁଲୁ ସେ ତାଙ୍କର ଦାନ୍ତଘଷା କାମଟି ଶେଷ କରି ଦେଉଥାନ୍ତି । ଦାନ୍ତଘଷା ପରେ କଲେଜ୍ଞା ପିଇବା ପୂର୍ବରୁ, ସେ କିଛି ଗରମ ଦୁଧ ପିଉଥିଲେ । ଦିନେ ସେହି ଗରମ ଦୁଧ ଅତି ବେଶୀ ଗରମ ହୋଇଥିଲା, ତାହା ହଠାତ୍ ପିଇ ଦେବା ଫଳରେ ତାଙ୍କର ଜିଭ, ଗଳା ଇତ୍ୟାଦି ପୋଡ଼ିଗଲା । କିନ୍ତୁ ସେ ଏଥିପାଇଁ ଗୃହକରଙ୍କୁ କିଛି କହିଲେ ନାହିଁ । ତାହା ହାତରେ ପାଞ୍ଚଟଙ୍କା ଦେଇ କେବଳ କହିଲେ, ହରିମିଶ୍ରଙ୍କଠାରୁ ଔଷଧ ଆଣି ରଖିବ ।

ବ୍ରଜସୁନ୍ଦର ବାବୁ କ'ଣ ପ୍ରତିକ୍ରିୟାଶୀଳ (Reactionary) ଲୋକ ଥିଲେ ? ଗୋଟିଏ ସମୟ ଥିଲା ଯେତେବେଳେ କଂଗ୍ରେସର ମତ ସଙ୍ଗେ ଯେଉଁମାନଙ୍କର ମତ ମିଳୁ ନଥିଲା, ସେମାନଙ୍କୁ 'ପ୍ରତିକ୍ରିୟାଶୀଳ' ଏହି ଗୋଟିକ ଶବ୍ଦରେ ଉଡ଼ାଇ ଦିଆଯାଉଥିଲା । ବ୍ରଜସୁନ୍ଦର ବାବୁ ଅନ୍ଧ ଭାବରେ କୌଣସି ମତ ଗ୍ରହଣ କରି ପିବାର ଲୋକ ନ ଥିଲେ । ହିନ୍ଦୁ ଦେବୋତ୍ତର ଆଇନ୍‌ର ଖସଡ଼ା ଓଡ଼ିଶା ଆସେମ୍ବ୍ଲିରେ ଆଲୋଚିତ ହେବା ସମୟରେ ସେ ଦେଖାଇଥିଲେ, ଯେଉଁ ନୀତିରେ ଏ ଆଇନ୍ ହେଉଛି ତାହା ପୂର୍ବର ନୀତି ନିୟମର ଖିଲାପ କରୁଛି । ମଠମନ୍ଦିରଗୁଡ଼ିକର ପରିଚାଳନାରେ ଯେ ବିଭ୍ରାଟ ହେଉଛି ତାହା ସେ ସ୍ୱୀକାର କରିଥିଲେ, କିନ୍ତୁ ସେଗୁଡ଼ିକ ସରକାର ହାତକୁ ଚାଲିଗଲେ ଯେ ସେଗୁଡ଼ିକର ସୁପରିଚାଳନା ହେବ ଓ ସେସବୁ ଯେଉଁ ଉଦ୍ଦେଶ୍ୟରେ ପ୍ରତିଷ୍ଠିତ ହୋଇଥିଲା ତାହା ସିଦ୍ଧି ହେବ, ଏଥିରେ ତାଙ୍କର ବିଶ୍ୱାସ ନ ଥିଲା । ସେହିପରି ସେ କାଳର କଂଗ୍ରେସ-ପନ୍ଥୀମାନେ ଦେଶମିଶ୍ରଣ ସମସ୍ୟାକୁ

ପଛକୁ ପକାଇ ଦେବା ସେ ପସନ୍ଦ କରି ନ ଥିଲେ । ଓଡ଼ିଶା ଏକ ହୋଇ ଭାରତର ଅଙ୍ଗ ହୋଇ ରହିଲେ, ତା'ର ଓ ଭାରତର କଲ୍ୟାଣ ହେବ ବୋଲି ସେ ବିଶ୍ୱାସ କରୁଥିଲେ ।

ଯେ ସମସ୍ତ ଜୀବନ ଦେଶ ସେବାରେ ଦେଇ ସବୁ ଜମିଦାରି ଶେଷ କରି ଶେଷରେ ଦୁଃଖ ଦାରିଦ୍ର୍ୟ ବରଣ କରିଥିଲେ, ଯେ ଦେଶପାଇଁ ସବୁ କ୍ଷେତ୍ରରେ ଲଢ଼ିଥିଲେ—ବିଶ୍ୱବିଦ୍ୟାଳୟରେ, ରାଜ୍ୟ ଓ କେନ୍ଦ୍ର-ବ୍ୟବସ୍ଥାପକ ସଭାମାନଙ୍କରେ, ଉତ୍କଳ ସମ୍ମିଳନୀରେ, ଉତ୍କଳ ସାହିତ୍ୟ ସେବାରେ—ତାଙ୍କୁ ଖାଲି ପ୍ରତିକ୍ରିୟାଶୀଳ ବୋଲି ଉଡ଼ାଇ ଦେବା ଠିକ୍ ହେବନାହିଁ ।

ବ୍ରଜସୁନ୍ଦର ବାବୁଙ୍କର ଜୀବନର ଭାବ କିପରି ଥିଲା ତାହା ନିମ୍ନ-ଲିଖିତ କବିତାରୁ ସ୍ପଷ୍ଟ ଜଣା ପଡ଼ିବ ।

"ତୁମ୍ଭ ନାମ ଜପୁ ଜପୁ ଯାଉ ଏ ଜୀବ
ଯାହା ହେବାର ହେବ
ପଡ଼େ ପଡ଼ୁ ଚଉରାଶି ନରକ କୁଣ୍ଡେ
ନାମ ବିନା କିଛୁ ଆଉ ନ ଆସୁ ତୁଣ୍ଡେ ।
ହୃଦେ ଆଶା କରି ମୁହିଁ ତୋ ନାମ-ଦଣ୍ଡ
ସହିବି ମୁଁ ଯମ ଯାହା ଦେବଟି ଦଣ୍ଡ ।
ଆଜନ୍ମ ପାପୀର ଏତେ ମାନ ମାଗୁଣି
କଳ୍ପତରୁ ଦୟା ବହି ଦେବେ କି ପୁଣି ?
ନାମେ ଦାସ, କାମେ ଦାସ ନ ହେଲି କେବେ
ବୃଥାରେ କାଟିଲି କାଳ ରହି ଏ ଭବେ ।"



# ବ୍ରଜସୁନ୍ଦରଙ୍କ ଛାତ୍ର-ଜୀବନ

## ରାୟବାହାଦୁର ବୈଦ୍ୟନାଥ ମିଶ୍ର

ସ୍ୱର୍ଗୀୟ ବ୍ରଜସୁନ୍ଦରଙ୍କର ଛାତ୍ରଜୀବନ ପ୍ରକୃତରେ କଟକରେ ଫାଷ୍ଟ ଆର୍ଟସ୍ ଶ୍ରେଣୀରେ ଦୁଇବର୍ଷ ଓ ବି.ଏ. ଦୁଇବର୍ଷ କଲିକତାରେ ଅତିବାହିତ କରିଥିଲେ—ସେ ଚାରିବର୍ଷ ମଧ୍ୟ ଉତ୍କଳମଣିଙ୍କ ସଙ୍ଗେ ଆମ୍ଭ ଦୁହିଁଙ୍କର ଘନିଷ୍ଠଭାବରେ ମିଳାମିଶା ଥିଲା । ସେ ଅଳ୍ପ ବୟସରେ ମାତୃ ପିତୃ ହୀନ ହୋଇ କୈଶୋର ବୟସରୁ ଆତ୍ମ ନିର୍ଭରଶୀଳ ହେବାକୁ ବାଧ୍ୟ ହୋଇଥିଲେ । ତାଙ୍କର ଅବଶ୍ୟ ଜମିଦାରିର ଆୟରୁ ସେ କଟକରେ କଲେଜ ଶିକ୍ଷା ଲାଭ କରିବାକୁ ସମର୍ଥ ହୋଇଥିଲେ । କଟକ ସାଉଁଳିଆ ପଟିରେ ତାଙ୍କର ନିଜର ଛୋଟ ଦୋତାଲା କୋଠାଟିଏ ଥିଲା । ତାଙ୍କ ପିତାଙ୍କର ଜଣେ ଅତି ବୃଦ୍ଧ ବିଶ୍ୱସ୍ତ ଭୃତ୍ୟର ତତ୍ତ୍ୱାବଧାନରେ ସେ ରହି ପଢ଼ୁଥିଲେ । ପୁରୀରୁ ମୁଁ, ଉତ୍କଳମଣି, ଆଉ ଜଣେ ଶ୍ରୀ ଗୋପୀନାଥ ଦାସ ବୃତ୍ତି ପାଇ ଏଫ.ଏ. ରେ ନାମ ଲେଖାଇ ବ୍ରଜସୁନ୍ଦରଙ୍କ ସଂସ୍ରବରେ ଆସିଲୁ । କଟକର ବିଖ୍ୟାତ ଓକିଲ ହରିବଲ୍ଲଭ ବାବୁ ତାଙ୍କର ସରକାରୀ ଅଭିଭାବକ ନିଯୁକ୍ତ ହୋଇଥିଲେ; କିନ୍ତୁ ସେ ବଡ଼ ଓକିଲ ଥିବାରୁ କିଛି କରୁ ନ ଥିଲେ । ବ୍ରଜସୁନ୍ଦର ଏକପ୍ରକାର ନିରଙ୍କୁଶ ହୋଇ ଚଳୁଥିଲେ ।

ତାଙ୍କ ଘରଠା ସମବୟସୀ ସହପାଠୀମାନଙ୍କର ଆଡ୍ଡା ଥିଲା । ଏଫ୍.ଏ. ପଢ଼ିଲାବେଳେ ତାଙ୍କର କଣ ଗୋଟେ ବେମାରୀ ବାହାରିଲା ଯେ ଅଧ-ଘଣ୍ଟେ ସୁଦ୍ଧା ସେ ବହି ଧରିଲେ ଭୀଷଣ ମୁଣ୍ଡ ବ୍ୟଥାରେ ଅସହ୍ୟ ଯନ୍ତ୍ରଣା ଭୋଗ କରନ୍ତି । ନିୟମିତ ପାଠାଭ୍ୟାସ କରିବା ତାଙ୍କପ୍ରତି ବଡ଼ ଅସହନୀୟ ହୋଇପଡ଼ିଥିଲା । ଏ ସମୟରେ ଆମ୍ଭେମାନେ ବନ୍ଧୁତ ସାହାଯ୍ୟ କରିଥିଲୁ । ବିଶେଷତଃ ଏ ଭର ବେଶି ମୋତେ ନେବାକୁ ପଡ଼ୁଥିଲା । ପାଠ୍ୟପୁସ୍ତକ ମୁଁ ତାଙ୍କ ଆଗରେ ବସି ପଢ଼େ ଓ ବୁଝାଏଁ । କିନ୍ତୁ ତାଙ୍କର ସେତିକି ସାହାଯ୍ୟରେ ପାଠ ଆୟତ୍ତ ହୋଇଯାଏ । ବସ୍ତୁତଃ ସେ ଏଫ୍.ଏ.ର ସମସ୍ତ ନିର୍ଦ୍ଧାରିତ ବିଷୟରେ ସେ ଶେଷ ବିଶ୍ୱବିଦ୍ୟାଳୟ ପରୀକ୍ଷାରେ ଆଶାତୀତ ଭାବରେ ଉତ୍ତୀର୍ଣ୍ଣ ହୋଇଗଲେ । ବି.ଏ. ବେଳକୁ ମୁଁ କଲିକତାରେ ସରକାରୀ ବୃତ୍ତି ନେଇ ପଢ଼ିବାକୁ ଚାଲି-ଯିବାରୁ ସେ ମଧ୍ୟ ଚତୁର୍ଥ ବି.ଏ. ଶ୍ରେଣୀ ବେଳକୁ କଟକରୁ କଲିକତା ଯାଇ ସେଠି ପ୍ରେସିଡେନ୍ସି କଲେଜରେ ନାମ ଲେଖାଇଲେ । ତାଙ୍କର ବେମାରୀ ସେ ସମୟକୁ ଟିକିଏ ଉପଶମ ହୋଇଥିଲେ ମଧ୍ୟ ସେହିପରି ସାହାଯ୍ୟ ନେଉଥିଲେ ଏବଂ ପ୍ରାୟ ପ୍ରତ୍ୟହ ତାଙ୍କ ବସା ଶାମବଜାରରୁ ଇଡେନ୍ ହିନ୍ଦୁ ହଷ୍ଟେଲକୁ ମୋ ପାଖକୁ ଆସି ପାଠାଭ୍ୟାସ କରୁଥିଲେ । ସେଥର ଗୋଟେ ବନ୍ଧୁ କଟକରୁ ପାଶ କରିପାରି ନଥିଲେ; କିନ୍ତୁ ପ୍ରେସି-ଡେନ୍ସିର ଶିକ୍ଷା ପ୍ରଣାଳୀ ଓ ଅନ୍ୟାନ୍ୟ ସୁବିଧା ପାଇ ବ୍ରଜସୁନ୍ଦର ବି.ଏ. ଟା ଆୟତ୍ତ କରିନେଲେ । ସେ ସମୟରେ ନବୀନମାନଙ୍କ ମନରେ ଦେଶ ପ୍ରତି କର୍ତ୍ତବ୍ୟର ଗୋଟିଏ ପ୍ରେରଣା ଆସିଥିଲା । ଆମ୍ଭମାନଙ୍କର ବିଶେଷତଃ ଉତ୍କଳମଣି ଓ ବ୍ରଜସୁନ୍ଦର ଓ ଅନ୍ୟ କେତେକ ବନ୍ଧୁଙ୍କ ଯତ୍ନରେ ବିନୋଦ ବିହାରୀ ମନ୍ଦିରରେ 'କର୍ତ୍ତବ୍ୟ ବୋଧିନୀ' ବୋଲି ଗୋଟିଏ ସଭା ଆରମ୍ଭକରି ସାପ୍ତାହିକ ଅଧିବେଶନ ଓ ପ୍ରବନ୍ଧ ପାଠ ଇତ୍ୟାଦି ଦ୍ୱାରା ଦେଶ ପ୍ରତି, ସ୍ୱୀୟ ସମାଜର କର୍ତ୍ତବ୍ୟ ପ୍ରତି ପ୍ରେରଣା ଦେଉଥିଲୁ । ବ୍ରଜସୁନ୍ଦର ଏସବୁ ବିଷୟରେ ନେତୃତ୍ୱ ନେଇ କାର୍ଯ୍ୟ କରୁଥିଲେ । ମୁଁ ଓ ସେ ସେତେବେଳେ କଲିକତା ପ୍ରେସିଡେନ୍ସି କଲେଜରେ କେବଳମାତ୍ର ଯୋଡ଼ିଏ ଛାତ୍ର ଥିଲୁଁ । ଥରେ ମନେ ହେଉଛି କଲିକତାରେ କୌଣସି ହୋଟେଲରେ ଆମ୍ଭେ ଦୁହେଁ ଓ ସ୍ୱର୍ଗୀୟ ଗୋପାଳ ପ୍ରହରାଜେ, ଆଉ ଜଣେ ଦୁଇଜଣ (କିଏ ତ ମନେ ପଡ଼ୁନାହିଁ)

କୁଳବୃଦ୍ଧ ମଧୁବାବୁଙ୍କ ସହିତ ଦେଖାକରି ଦେଶରେ ଜଳନ୍ତି ବିଷୟରେ ଦୁଇଘଣ୍ଟା ଆଲୋଚନା କରିଥିଲୁଁ । ଉତ୍କଳ ସମ୍ମିଳନୀର ଅଙ୍କୁରାରୋପଣ ସମ୍ବନ୍ଧରେ ମଧୁବାବୁଙ୍କ ମୁହଁରୁ ଶୁଣିଥିଲୁ । ଅବଶ୍ୟ ତାର କେତେକ ବର୍ଷରେ ସମ୍ମିଳନୀର ପ୍ରାଣ ପ୍ରତିଷ୍ଠା ହୋଇଥିଲା । ଦେଶ ପ୍ରତି ମମତା ବ୍ରଜସୁନ୍ଦରଙ୍କ ମଜ୍ଜାଗତ ଥିଲା ଏବଂ ଛାତ୍ର-ଜୀବନରୁ ତାର ଯଥେଷ୍ଟ ଆଭାସ ମିଳୁଥିଲା । ମୁଁ ତାଙ୍କ ସହିତ ଏହି ଛାତ୍ର-ଜୀବନରେ ଏହି ୩।୪ ବର୍ଷ ସଂସ୍ପର୍ଶରେ ଆସିଥିଲି । ସେ ଯେପରି ବ୍ୟାଧିଦ୍ୱାରା ସାଧାରଣ ଛାତ୍ରଙ୍କ ପରି ପରିଶ୍ରମ କରିବାକୁ ବାଧା ପାଉଥିଲେ; ତା’ସତ୍ତ୍ୱେ ସେ ଯେ କେବଳ ଅନ୍ୟ ଠାରୁ ପାଠ ପଢ଼ାରେ ସାମାନ୍ୟ ସାହାଯ୍ୟ ପାଇ ପରୀକ୍ଷା ସବୁରେ ଉତ୍ତୀର୍ଣ୍ଣ ହୋଇଗଲେ, ଏହା ଅନ୍ତର୍ନିହିତ ପ୍ରତିଭାର ପରିଚାୟକ ଏଥିରେ ମତାନ୍ତରର ଆଶଙ୍କା ନ ଥାଇପାରେ ।

ପୁରୀ
୧୫ । ୧ । ୬୦



# ରସାଚମୋଟୀ ବ୍ରଜସୁନ୍ଦର

ଶ୍ରୀ ମୁରଲଧର ମହାନ୍ତି, ବାର୍-ଆଟ୍-ଲ

ଊନବିଂଶ ଶତାବ୍ଦୀର ଶେଷ ଓ ବିଂଶ ଶତାବ୍ଦୀର ଆରମ୍ଭରେ ଉତ୍କଳରେ ଅନେକ ସୁନାମଧନ୍ୟ ବଶିଷ୍ଟ ବ୍ୟକ୍ତିଙ୍କ ସମେତ ବ୍ୟକ୍ତି ଦେଖା ଯାଉଥିଲେ । କବି ରାଧାନାଥ, ଭକ୍ତକବି ମଧୁସୂଦନ, ଔପନ୍ୟାସିକ, ଗାଳ୍ପିକ, ରସକବି, ବ୍ୟଙ୍ଗରଚନାପଟୁ ଓ ଜୀବନୀକାର ଫକୀର ମୋହନ, ନାଟ୍ୟକାର ରାମଶଙ୍କର, ସାମ୍ବାଦିକ ଗୌରୀ ଶଙ୍କର, ଦେଶ ନେତା ମଧୁସୂଦନ, ନାଟ୍ୟକାର ଓ ବ୍ୟଙ୍ଗକବି ଭିକାରୀ ଚରଣ, ସଙ୍ଗୀତରସିକ ଗୋକୁଳଚନ୍ଦ୍ର, ନାଟ୍ୟାଭିନୟବିତ୍ ଗୋବିନ୍ଦଚନ୍ଦ୍ର, ବାଗ୍ମୀ ଓ ପତ୍ରିକା ସମ୍ପାଦକ ବିଶ୍ୱନାଥ, ଐତିହାସିକ ଲେଖକ ଜଳନ୍ଧର ଓ ଜଗବନ୍ଧୁ, ବ୍ୟଙ୍ଗାତ୍ମକ ସମାଲୋଚକ ଗୋପାଳଚନ୍ଦ୍ର, ବୈୟାକରଣ ଚନ୍ଦ୍ରମୋହନ, ରାଜନୈତିକ କର୍ମୀ ଓ ଦେଶପ୍ରେମୀ ଗୋପବନ୍ଧୁ ଦାସ, ଜନସେବକ ଗୋପବନ୍ଧୁ ଚୌଧୁରୀ, ବଳିଷ୍ଠ ସାହିତ୍ୟିକ ନୀଳକଣ୍ଠ, ସେବାବ୍ରତ ଲକ୍ଷ୍ମୀନାରାୟଣ ପ୍ରମୁଖ ବହୁ ବଶିଷ୍ଟ ବ୍ୟକ୍ତି ସ୍ୱ ସ୍ୱ ପ୍ରତିଭାରେ ସମୁଜ୍ଜ୍ୱଳ ଥାଇ ଉତ୍କଳର ଜାତୀୟ ଆକାଶକୁ ଭାସ୍ୱର କରିଥିଲେ । ତନ୍ମଧ୍ୟରୁ କେହି କେହି ଅଦ୍ୟାପି ଜୀବିତ । ଏମାନଙ୍କ ମଧ୍ୟରେ ବ୍ରଜ ସୁନ୍ଦରଙ୍କର ସ୍ଥାନ ସାମାନ୍ୟ ନ

ଥିଲା । ବ୍ରଜସୁନ୍ଦର ଶିକ୍ଷିତ, ସୁରୁଚି ସମ୍ପନ୍ନ ଦେଶ ପ୍ରେମୀ ଥିଲେ ଓଡ଼ିଆ ସାହିତ୍ୟର ପ୍ରଚାର ଓ ଉତ୍କଳର ବିଚ୍ଛିନ୍ନାଞ୍ଚଳ ମିଶ୍ରଣ ଦ୍ୱାରା ବୃହତ୍ତର ଉତ୍କଳ ଗଠନରେ ତାଙ୍କର ଉଦ୍ୟମ ଓ କୃତି ଉଲ୍ଲେଖଯୋଗ୍ୟ ଥିଲା । "ମୁକୁର" ସମ୍ପାଦକ ହିସାବରେ, 'ମୁକୁର ପ୍ରେସ୍'ର ପ୍ରତିଷ୍ଠାତା ଭାବରେ ଓ "ଓଡ଼ିଆ—ଆନ୍ଦୋଳନ"ର ଜଣେ ଅଗ୍ରଣୀ ଓ ବିଶିଷ୍ଟ କର୍ମୀ ହିସାବରେ ତାଙ୍କର ଦେଶ ସେବା ଓ ଗଣହିତ ସମ୍ମାନ ଓ ପ୍ରଶସ୍ତି ଅର୍ଜନ କରିଥିଲା ।

କିନ୍ତୁ ତାଙ୍କର ବ୍ୟକ୍ତିତ୍ୱ, ପ୍ରତିଭା, ପ୍ରଭାବ ଓ ପ୍ରକୃତିର ବୈଶିଷ୍ଟ୍ୟ ଉପରୋକ୍ତ କର୍ମ ବିଭାଗ ଓ କାର୍ଯ୍ୟାବଳୀ ଦ୍ୱାରା ନିର୍ଦ୍ଧାରିତ କଲେ ତାଙ୍କର ଜୀବନ ଓ କୃତିର ପ୍ରକୃତ ମୂଲ୍ୟାୟନ ହୋଇପାରିବା ସମ୍ଭବ ନୁହେଁ । ତାଙ୍କର ବ୍ୟକ୍ତିତ୍ୱ ଓ ପ୍ରତିଭାର ପ୍ରଧାନ ଏବଂ ମୌଳିକ ଭିତ୍ତିଥିଲା ରସବୋଧ ଓ ରସାମୋଦିତ୍ୱ । କି ସାହିତ୍ୟ, କି କବିତା, କି ସଂଗୀତ କି କଳାବିଚାର, କି ରନ୍ଧନ ଶୈଳୀ, କି ଭୋଜନ ବିଳାସ, କି ଗଳ୍ପାମୋଦ, କି ଉଦ୍ୟାନ ରସିକତା ଅବା କି ଶିଳ୍ପପ୍ରୀତି, ସବୁଥିରେ ତାଙ୍କର ବୈଶିଷ୍ଟ୍ୟ ଥିଲା ରସ-ପ୍ରେମୀ, ରସଲୋଭୀ ଓ ରସାମୋଦୀ ରସାନ୍ୱେଷକର । ଅରସିକ ବା ବେରସିକ ଅର୍ଥାତ୍ ରସବୁଦ୍ଧି ଶୂନ୍ୟ ବା ବିକୃତ ରସ ବୁଦ୍ଧି-ସମ୍ପନ୍ନ ହେବା ତାଙ୍କ ପ୍ରକୃତି ଓ ପ୍ରତିଭାର ବିରୋଧୀ ଥିଲା । ଦୁଃଖ-ବିପଦ, ଦୁର୍ଯୋଗ, ଚିନ୍ତା ଉଦ୍‌ବେଗ, ଦୁର୍ବିପାକ, ତାଙ୍କ ଜୀବନରେ ବହୁକାରଣରୁ ବହୁକାଳ ଭୋଗିବାକୁ ପଡ଼ିଥିଲେ ମଧ୍ୟ ତାଙ୍କର ଜୀବନର ରସ ନିର୍ଝରଣୀର ଉତ୍ସକୁ କେବେହେଁ ଏ ସବୁ ଶୁଷ୍କ କରି ପାରି ନଥିଲା । ସୁଖ ବିଳାସରେ ଯାହା ତଟପ୍ଲାବିନୀ ଖରସ୍ରୋତା ହୋଇ ପ୍ରବାହିତା ଥିଲା, ଦୁଶ୍ଚିନ୍ତା ଦୁର୍ଭୋଗର ଦାଉରେ ତାହା ଯେ ସେହିପରି ପୂର୍ଣ୍ଣତୋୟା ହୋଇ ରହି ପାରିଥିଲା, ଏହା କହିବା ସମ୍ଭବ ନୁହେଁ । କିନ୍ତୁ ସେ ସ୍ରୋତସ୍ୱିନୀର ଗତି କେବେ କେବେ ଦୁର୍ବଳ ହେଲେ ମଧ୍ୟ ତାଙ୍କର ସଞ୍ଜୀବନ ତାହା ଅପ୍ରତିହତ ଥିଲା ।

ଜମିଦାର ଘରର ସନ୍ତାନ ହୋଇଥିବାରୁ ତାଙ୍କର ଜୀବନ ବିଳାସ-ମସ୍ତ ଥିଲା । ଏହା ଠିକ୍, କିନ୍ତୁ ଉକ୍ତ ବିଳାସରେ ଧନୀର ବଡ଼ିମା, ଅଭିଜାତ୍ୟର ଔଦ୍ଧତ୍ୟ, ଭୋଗୀର ଆତ୍ମମ୍ଭରିତା, କ୍ଷମତାଶାଳୀର ପର ନିଗ୍ରହ, କ୍ଷମତାହୀନର ସ୍ୱାର୍ଥପରତା ନ ଥାଇଁ ବରଂ ସୁରୁଚିର ସୂକ୍ଷ୍ମତା, ରସାମୋଦୀର ପ୍ରସନ୍ନତା, ଦୟାଳୁର ସମବେଦନା, ସହୃଦୟର ପ୍ରୀତି ଓ କଳାକୁଶଳୀର ଶାନ୍ତ ପ୍ରିୟତା ପୁରି ପଡ଼ିଛି ଥିଲା । ଏହାଛଡ଼ା ବିଳାସ ଓ ଆମୋଦ ମଧ୍ୟରେ

ତାଙ୍କର ପ୍ରକୃତିଗତ ସରଳ ନିରହଙ୍କାରତା ଓ ଶାନ୍ତ, ନମ୍ର ଓ ମଧୁର ବ୍ୟବହାର ସର୍ବସାଧାରଣଙ୍କୁ ତାଙ୍କ ପ୍ରତି ଆକୃଷ୍ଟ କରିଥିଲା । ଏପରିକି ପରିଣତ ବୟସରେ ମଧ୍ୟ ସେ ନିଜର ବାଳସୁଲଭ ରସୋଗ୍ରାହୀ ଯୋଗୁଁ ଅପେକ୍ଷାକୃତ ଅଳ୍ପ ବୟସ୍କମାନଙ୍କର ପ୍ରିୟସଙ୍ଗୀ ଭାବରେ ଆଦରଣୀୟ ଥିଲେ ।

ଏହି ରସଦୃଷ୍ଟିରୁହିଁ ତାଙ୍କର ସାହିତ୍ୟ ସେବାକୁ ବିଗ୍ଭର କରିବା ଉଚିତ । ସେ ଯେ ଜଣେ ଦେଶପ୍ରେମୀ, ସାହିତ୍ୟ ପ୍ରେମୀ, ଓ ଉତ୍ସାହୀ ଦେଶସେବକ ଥିଲେ, ଏହାକୁ ସନ୍ଦେହ କରିବାର ଅବକାଶ ନଥିଲେ ମଧ୍ୟ ଏବଂ ଏହିସବୁ କାରଣରୁ ଯେ ସେ ସାହିତ୍ୟ ପ୍ରଗ୍ଭରରେ ମନ ବଳାଇ ଥିଲେ ଏହାମଧ, ଅବିସଂବାଦିତ ଥିଲେ ହେଁ ତାଙ୍କର ସାହିତ୍ୟ ଓ କଳା ସେବାର ପ୍ରେରଣା ଯେ ତାଙ୍କର ରସାନ୍ୱେଷୀ ପ୍ରବୃତ୍ତି ଯୋଗାଇଥିଲା ଏହାର ସତ୍ୟତା ଅଧିକ ମୌଳିକ ଓ ଯଥାର୍ଥ । ସୃଷ୍ଟିର ଆନନ୍ଦ ଶିଳ୍ପୀ ବା କଳାକାର ନିରପେକ୍ଷଭାବରେ ପାଇଥାଏ ସତ୍ୟ, କିନ୍ତୁ ରସଗ୍ରାହୀ ଶ୍ରୋତା ଦର୍ଶକ ଓ ପାଠକ ଅଭାବରେ ରସର ଉଚିତ ବିଗ୍ଭର, ମୂଲ୍ୟାୟନ ଓ ଆଦର ହୋଇପାରେ ନାହିଁ ଓ କବି, ଲେଖକ, ଚିତ୍ରକାର, ନଟ, ଶିଳ୍ପୀ ବା କଳାକାରର ରସ ପ୍ରକାଶର ଆଶା ଅପୂର୍ଣ୍ଣ ଓ ମର୍ଯ୍ୟାଦା ଅପ୍ରାପ୍ତ ବା ଅବହେଳିତ ହୁଏ । ତେଣୁ "ନିରବଧି କାଳ"ରେ "ବିପୁଳ ପୃଥ୍ୱୀରେ" କଳାଶିଳ୍ପୀ "ସମାନଧର୍ମୀ" ରସଗ୍ରାହୀକୁ ଖୋଜିବୁଲେ ଓ ବିଧାତାଙ୍କୁ ଐକାନ୍ତିକ ମିନତି ଜଣାଏ—"ଅରସିକେଷୁ ରସସ୍ୟ ନିବେଦନଂ ଶିରସି ମାଲିଖ, ମାଲିଖ ମାଲିଖ ।"

ସଙ୍ଗୀତ ପ୍ରେମୀ ହିସାବରେ ମଧ୍ୟ ବ୍ରଜ ସୁନ୍ଦରଙ୍କର ଗ୍ଭରିତ୍ରିକ ପ୍ରତିଭା ଉଚ୍ଚସ୍ତରର ଥିଲା । ସେ ପ୍ରଧାନତଃ ଓଡ଼ିଶୀ, ଛାନ୍ଦ, ଚମ୍ପୂ, ଚଉପଦୀ, ଭଜନ, ପାଲା, ଦାସକାଠିଆ, କଣାଣ ଇତ୍ୟାଦି ଉତ୍କଳର ଲୌକିକ ସଙ୍ଗୀତର ରସବୋଧର ଅଧିକାରୀ ଥିଲେ ମଧ୍ୟ ହିନ୍ଦୁସ୍ଥାନୀ ସଙ୍ଗୀତ ସହିତ ଅପରିଚିତ ନଥିଲେ ଓ ଉତ୍କଳର ପ୍ରାଚୀନତମ ସଙ୍ଗୀତ ବିଦ୍ୟାଳୟ ଓ ଅନୁଷ୍ଠାନ "ଲକ୍ଷ୍ମୀକାନ୍ତ ସଙ୍ଗୀତ ବିଦ୍ୟାଳୟ" ଓ "ଉତ୍କଳ ସଙ୍ଗୀତ ସମାଜ" ସହିତ ତାଙ୍କର ସମ୍ପର୍କ ଓ ସହଯୋଗ ଘନିଷ୍ଠ ଓ ଦୀର୍ଘସ୍ଥାୟୀ ଥିଲା ।

ସଂଗୀତ ପ୍ରେମୀ ଓ କଳାକାରମାନେ ସର୍ବଦା ତାଙ୍କ ନିକଟରୁ ଆଦର ଓ ସମ୍ମାନ ଲାଭ କରୁଥିଲେ ଓ ସ୍ଥଳ ବିଶେଷରେ ତାଙ୍କ ଦ୍ୱାରା ଉତ୍ସାହିତ ମଧ୍ୟ ହେଉଥିଲେ । ଚିତ୍ରକର ଓ ନର୍ତ୍ତକମାନଙ୍କ ସମ୍ବନ୍ଧରେ ମଧ୍ୟ ଏହି ଏକକଥା । ବିଗତ ମହାଯୁଦ୍ଧ ସମୟରେ ଯେତେବେଳେ ଉତ୍କଳରେ "ଯୁଦ୍ଧଉଦ୍ୟମ"ର ପ୍ରଚାର କାର୍ଯ୍ୟରେ ସଙ୍ଗୀତର ସହାୟତା ଲୋଡ଼ା ଯାଇଥିଲା, ସେତେବେଳେ ସେ ପ୍ରତିଷ୍ଠାନର ଭାର ବ୍ରଜସୁନ୍ଦରଙ୍କ ଉପରେହିଁ ନ୍ୟସ୍ତ କରାଯାଇଥିଲା ଏବଂ ଏହି ଅନୁଷ୍ଠାନର ଆନୁକୂଲ୍ୟରେ ବହୁ ସଙ୍ଗୀତ ନାଟ୍ୟ କଳାକାର ଜୀବିକା ଅର୍ଜନର ସୁଯୋଗ ପାଇଥିଲେ ।

ବ୍ରଜସୁନ୍ଦର ସୌନ୍ଦର୍ଯ୍ୟର ପୂଜାରୀ ଥିଲେ । ଦୈନନ୍ଦିନ ଜୀବନର ନିତ୍ୟ ପ୍ରୟୋଜନୀୟ ବସ୍ତୁରେ ମଧ୍ୟ ସେ କଳା ଓ ସୌନ୍ଦର୍ଯ୍ୟର ସ୍ୱୀକୃତି ଅନୁସରଣ କରୁଥିଲେ । ଏ ଦିଗରେ ମଧ୍ୟ ତାଙ୍କର ମୌଳିକତା ସଦା ଭାସ୍ୱର ଥିଲା । କୌଣସି ଅସୁନ୍ଦର, ଅସାମଞ୍ଜସ୍ୟ ବା ଉତ୍କଟ ବସ୍ତୁ ତାଙ୍କର ସମର୍ଥନ ଅର୍ଜନ କରିପାରୁ ନ ଥିଲା । ଆଚାର, ବ୍ୟବହାର, କଥୋପକଥନ ସାମାଜିକ ଓ ପାରିବାରିକ ଜୀବନଯାପନରେ ମଧ୍ୟ ତାଙ୍କର ରସବୋଧ ଓ ରସଗ୍ରାହିତା ସୁପ୍ରତିଷ୍ଠିତ ଥିଲା ।

ସଜ୍ଜନର ସଦାଳାପରୁ ସେ କାହାରିକୁ ବଞ୍ଚିତ କରୁ ନଥିଲେ ଓ ତାଙ୍କର କାର୍ଯ୍ୟର ମୂଲ୍ୟ ଅପେକ୍ଷା ସାମାଜିକତା ଓ ମୈତ୍ରୀର ମହତ୍ତ୍ୱହିଁ ତାଙ୍କ ପରିଚିତମାନଙ୍କୁ ଅଧିକ ପ୍ରଭାବିତ କରୁଥିଲା । ଏହି ଦୃଷ୍ଟିରୁ ତାଙ୍କର କୃତି ଅପେକ୍ଷା ବ୍ୟକ୍ତିତ୍ୱହିଁ ବଡ଼ ଥିଲା, ଉଦ୍ୟମ ଅପେକ୍ଷା ଆଦର୍ଶହିଁ ଉତ୍କୃଷ୍ଟ ଥିଲା, ଅବଦାନ ଅପେକ୍ଷା ପ୍ରଭାବହିଁ ସଫଳତର ଥିଲା । ଉତ୍ପାଦନର ମାନରେ ତାଙ୍କର ଜୀବନର ସାଫଲ୍ୟ ଯାହା ହେଉନା କାହିଁକି ସହାନୁଭୂତି, ପ୍ରେରଣା, ସହୃଦୟତା, ସ୍ୱଭାବର ମାଧୁର୍ଯ୍ୟ ଓ ସୁପ୍ରସନ୍ନ ସହଯୋଗର ବିଚାରରେ ତାଙ୍କର ଜୀବନର ସାହଚର୍ଯ୍ୟ ଓ ବ୍ୟକ୍ତିତ୍ୱର ପ୍ରଭାବ ତାଙ୍କର ଜୀବଦ୍ଦଶାରେ ତାଙ୍କର ସମସ୍ତ ପରିଚିତମାନେ ଉତ୍ତମ ରୂପେ ଉପଲବ୍ଧି କରିଥିଲେ, ଓ ଆଜିମଧ୍ୟ ତନ୍ମଧ୍ୟରୁ ଜୀବିତ ମାନଙ୍କର ସକୃତଜ୍ଞ ସ୍ମୃତିରେ ତାହା ସୁସ୍ପଷ୍ଟଭାବେ ବିଦ୍ୟମାନ । ସଦାଶୟ, ଆତ୍ମଭୋଳା, ତାଙ୍କର ଉଦାର, କ୍ଷମାଶୀଳ ଓ ସସ୍ନେହ ବ୍ୟକ୍ତିତ୍ୱର ପରିଚିତି ସମସାମୟିକ ସମାଜରେ ସୁଜ୍ଞାତ ଥିଲା ।

ବ୍ରଜସୁନ୍ଦର ବନ୍ଧୁବତ୍ସଳ ଥିଲେ ଏବଂ ପରିଚିତମାନଙ୍କୁ ସୁସ୍ୱାଦୁ ଖାଦ୍ୟପେୟାଦିରେ ପରିତୃପ୍ତ କରିବାକୁ ଭଲ ପାଉଥିଲେ । ଖାଇବା ଓ ଖୋଇବା ଜନିତ ବିଳାସରେ ସେ ପରମ ଆନନ୍ଦ ଉପଲବ୍ଧି କରୁଥିଲେ । ସେ ନିଜେ ମଧ୍ୟ ଜଣେ ବିଶିଷ୍ଟ ସୁପାଚକ ଥିଲେ । ଆପଣା ହାତରେ ପାକ କରି ଅନ୍ୟମାନଙ୍କୁ ଖୁଆଇବାରେ ସେ ଅସୀମ ଆନନ୍ଦ ଉପଲବ୍ଧି କରୁଥିଲେ । ଏହା କେବଳ ତାଙ୍କର ସଦାଶୟତାର ପରିଚାୟକ ମାତ୍ର ନ ଥିଲା, ତାଙ୍କର ରନ୍ଧନ ପ୍ରକ୍ରିୟା ଓ ଶୈଳୀ ସମ୍ବନ୍ଧରେ ଗଭୀର ଜ୍ଞାନ ଓ ରସବୋଧର ଅଭିବ୍ୟକ୍ତି ରୂପେ ମଧ୍ୟ ପ୍ରଶଂସା ଅର୍ଜନ କରିଥିଲା । ତାଙ୍କର ସ୍ନେହସ୍ନିଗ୍ଧ ବନ୍ଧୁଲୋକେ ଆଜିମଧ୍ୟ ସକୃତଜ୍ଞ ଚିତ୍ତରେ ତାଙ୍କର ସୁପକ୍ୱ,ସୁସ୍ୱାଦୁ ଆହାର୍ଯ୍ୟର ବହୁଳ ଆସ୍ୱାଦନର ଆନନ୍ଦ ସ୍ମରଣ କରୁଅଛନ୍ତି । ଏକାଧାରରେ ସେ ସୁଭୋକ୍ତା ଓ ସୁଭୋଜକ ହିସାବରେ ପ୍ରଶଂସନୀୟ ହୋଇଥିଲେ ।

ସୁଗ୍ରନ୍ଥ ପାଠ ଓ ସାହିତ୍ୟରସ ସ୍ୱାଦ ମଧ୍ୟ ତାଙ୍କର ରସମୟଜୀବନର ଉପାଦାନ ଯୋଗାଇଥିଲା । କିନ୍ତୁ ଜ୍ଞାନ କେବେ ତାଙ୍କର ବିନୟର ମାଧୁର୍ଯ୍ୟ, ବ୍ୟକ୍ତିତ୍ୱର ସରସତାକୁ ନଷ୍ଟ କରି ନଥିଲା । ଏହି ରସିକ ସଦାନନ୍ଦ ବ୍ୟକ୍ତିର ଚରିତ୍ରର ପ୍ରଧାନ ବିଶେଷତ୍ୱ ଥିଲା ଯେ, ଭୋଗ ତାଙ୍କୁ ସ୍ୱାର୍ଥପର କରି ନଥିଲା, ବିଳାସ ତାଙ୍କୁ ବ୍ୟସନୀ କରି ନଥିଲା । ଆମୋଦ ତାଙ୍କୁ ନୀତିଭ୍ରଷ୍ଟ କରି ନଥିଲା ଓ ଉଦାରତା ତାଙ୍କୁ ଉଚ୍ଛୃଙ୍ଖଳ କରି ନଥିଲା । ଅଜାତଶତ୍ରୁ, ସଦାପ୍ରସନ୍ନ, ସଚ୍ଚିନ୍ତାଶୀଳ ଏହି ସୁଦର୍ଶୀ ଓ ସଦାଶୟ ବ୍ୟକ୍ତିଟି ସମସାମୟିକ ଭାବରେ ନିଜର ନିରୂପମ ବୈଶିଷ୍ଟ୍ୟ ଧନ୍ୟ ଥିଲା । ଜ୍ଞାନର ଦମ୍ଭ ଅର୍ଥ ବା ମର୍ଯ୍ୟାଦାର ଅହଂକାର, ସ୍ୱାର୍ଥପରତାର ନୀଚତା ବା ଆତ୍ମକେନ୍ଦ୍ରିତ୍ୱର ଅନୁଦାରତା ତାଙ୍କ ପ୍ରକୃତିର ବହିର୍ଭୂତ ଥିବାରୁ ସେ ସମସ୍ତଙ୍କୁ ନିଜର ପ୍ରକୃତି ଓ ବ୍ୟକ୍ତିତ୍ୱର ଔଦାର୍ଯ୍ୟ ଓ ମାଧୁର୍ଯ୍ୟ ଦ୍ୱାରା ଆକୃଷ୍ଟ କରି ପାରୁଥିଲେ ।

ଗୋଟିଏ ସୁରୁଚିପୂର୍ଣ୍ଣ ସରଳ ସରସ ଜୀବନ ଯେ ଗୋଟିଏ ପ୍ରତିଷ୍ଠାନ ସ୍ୱରୂପ ସମସାମୟିକ ସମାଜର ମଙ୍ଗଳଜନକ ହୋଇପାରେ, ଏହା ତାଙ୍କ ଜୀବନରେ ବିଶେଷଭାବରେ ପ୍ରମାଣିତ । ଜୀବନର ଅମୃତ ରସ ନିଜେ ଆସ୍ୱାଦନ କରି ଓ ଅନ୍ୟମାନଙ୍କୁ ଆସ୍ୱାଦନ କରାଇ ରସାମୋଦୀ ବ୍ରଜସୁନ୍ଦର ଦେଶ ଓ ସମାଜର କୃତଜ୍ଞତା ଅର୍ଜନ କରି ଯାଇ ଅଛନ୍ତି । ତାଙ୍କର

ଦେଶ ସେବାର ଅନ୍ୟାନ୍ୟ କୃତି ତାଙ୍କର ଜୀବନକୁ ଦେଶଭକ୍ତ କର୍ମୀ-ରୂପେ ସ୍ମରଣୀୟ କରିଥିଲେ ମଧ୍ୟ ତାଙ୍କର ରସମୟ ଜୀବନ ତାଙ୍କୁ ଅନୁଭବମାନଙ୍କ ନିକଟରେ ଚିର ଆଦରଣୀୟ କରି ରଖିଅଛି । ମନୀଷାର ଊର୍ଦ୍ଧ୍ୱରେ ଯେଉଁ ଆନନ୍ଦର ଅବସ୍ଥିତି, ତାହାହିଁ ତାଙ୍କର ବ୍ୟକ୍ତିତ୍ୱର ମାନ ଓ ଜୀବନର ଅଭିବ୍ୟକ୍ତି ।



# ସ୍ୱର୍ଗତ ବ୍ରଜସୁନ୍ଦର ଦାସ

## ଶ୍ରୀ ବ୍ରଜବନ୍ଧୁ ଦାସ

ବ୍ରଜବନ୍ଧୁ ବାବୁଙ୍କୁ ପ୍ରଥମେ ୧୯୦୯ ମସିହାରେ କଟକ ଟାଉନ-ହଲରେ ଦେଖିଲି । ସେତେବେଳେ ଟାଉନହଲ ଚଉଆରେ ଏକ ସଭା ହୋଇଥାଏ । ବ୍ରଜସୁନ୍ଦର ବାବୁ ଏକ ସୁମୂର୍ତ୍ତି, ସୁଶ୍ରୀ ଯୁବକ ଥିଲେ । ପଞ୍ଜାବର ଜଣେ ଖ୍ୟାତନାମା ବକ୍ତା ଓ ଧର୍ମ ପ୍ରଚାରକ କାହ୍ନଚନ୍ଦ୍ର ବର୍ମା ସାତଦିନ ଧରି ଉଚ ଚଉଣର ବିଷୟରେ ବକ୍ତୃତା ଦେଇଥିଲେ । ବ୍ରଜ-ସୁନ୍ଦର ବାବୁ ସେହି ସଭାରେ ତାଙ୍କୁ ଧନ୍ୟବାଦ ଦେଇଥିଲେ । ଖବର ନେଇ ବୁଝିଲି ଯେ, ସେ ଜଣେ ବି. ଏ. ପାସ୍ କରିଥିବା ବ୍ୟକ୍ତି, ରୁକିସିବାକିସି କରନାହାନ୍ତି, ଦେଶହିତୈଷୀ, ସାହିତ୍ୟସେବୀ ଓ 'ମୁକୁର' ପତ୍ରିକାର ସମ୍ପାଦକ । ମୁଁ ଛାତ୍ରାବସ୍ଥାରେ ଥାଇ ଅନେକଥର ତାଙ୍କୁ ସଭାସମିତିରେ ଦେଖିବାକୁ ପାଇଲି । କଟକ ଟାଉନହଲରେ ସେତେ-ବେଳେ ମାସକେ ଗୋଟାଏ ଦୁଇଟା ସଭା ହେଉଥିଲା । ଏଥିରେ ସାହିତ୍ୟ, ଧର୍ମ ଓ ରାଜନୀତି ଚର୍ଚ୍ଚା ହେଉଥାଏ । ଏସବୁ ସଭାସମିତିରେ ବ୍ରଜସୁନ୍ଦର ବାବୁ ଉଦ୍ୟୋକ୍ତା ଓ ବକ୍ତା ହୋଇଥାନ୍ତି । ତାପରେ ଆମ୍ଭେ ଛାତ୍ରମାନେ ସେତିକିବେଳେ 'ମୁକୁର' ପଢ଼ିବାକୁ ପାଉଥାଉ । 'ମୁକୁର' ତତ୍କାଳୀନ ଛାତ୍ର ସମାଜ ମଧ୍ୟରେ ସାହିତ୍ୟ ପ୍ରେମ ଜାଗରିତ କରୁଥିଲା ।

ତାପରେ ଦେଖିଲୁଁ ୧୯୧୧ ମସିହାରେ କଟକ ଟାଉନହଲ ପଡ଼ିଆରେ ଉତ୍କଳ ସମ୍ମିଳନୀ । ଗୋକୁଳ ଚନ୍ଦ୍ର ଚୌଧୁରୀ ଥିଲେ ଅଭ୍ୟର୍ଥନା ସମିତିର ସଭାପତି ଓ ମହାରାଜ ବୈକୁଣ୍ଠନାଥ ଦେ ଥିଲେ ସମ୍ମିଳନୀର ସଭାପତି । ସେ ସମ୍ମିଳନୀରେ ବ୍ରଜସୁନ୍ଦରବାବୁ ସ୍ୱେଚ୍ଛାସେବକ ସଂଗଠନ କରିଥିଲେ, ପ୍ରସ୍ତାବମାନ ଗଢ଼ା କରିଥିଲେ ଓ ନିଜେ ବି ବକ୍ତୃତା ଦେଇଥିଲେ । ଥରେ ଅଧେ ଆମ୍ଭେ କେତେକ ଛାତ୍ର ତାଙ୍କ ଚୌଧୁରୀ-ବଜାର ପୁରୁଣାଘରକୁ ସମ୍ମିଳନୀ ସମ୍ପର୍କରେ ଯାଇଥିଲୁଁ । ଦେଖିଲୁଁ ତାଙ୍କ ଘର ଗୋଟିଏ ସୈନିକ ଶିବିର ଭଳି ଥିଲା । ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ପ୍ରତିନିଧି ଆସି ସେଠାରେ ରହୁଥିଲେ । ଓଡ଼ିଶାର ଛାତ୍ର ସମାଜ ସେତେବେଳେ ଭାବୁଥିଲେ ଯେ, 'ମଧୁବାବୁ ତ ବୟସ ଓ ଯୋଗ୍ୟତା ହିସାବରେ ଏତେ ଉଚ୍ଚରେ ଥିଲେ ଯେ, ତାଙ୍କୁ ଧରି ହେବ ନାହିଁ । ସୁତରାଂ ହାମି ଲଭ ଭଳି ମନରେ ସମସ୍ତେ ବ୍ରଜବାବୁଙ୍କୁ ନେତା ବୋଲି ମଣି ତାଙ୍କ ନିକଟକୁ ଯାଉଥିଲେ । କଟକ ରେଭେନସା କଲେଜରେ ସେଣ୍ଟ୍ରାଲ ପୁଅର୍ ଉତ୍କଳ ଆସୋସିଏସନ ନାମରେ ଅନୁଷ୍ଠାନ ଥାଇ ଲୋକକଲ୍ୟାଣକର କାର୍ଯ୍ୟରେ ଯୋଗ ଦେଉଥିଲେ । ରେଭେନ୍‌ସା କଲେଜ ପ୍ରିନ୍‌ସିପାଲ ଥିଲେ ତାର ସଭାପତି ଓ ବ୍ରଜସୁନ୍ଦରବାବୁ ଥିଲେ ତାର ଉପ-ସଭାପତି । ତେଣୁ ହିସାବରେ ସେ ଓଡ଼ିଶାର ତତ୍କାଳୀନ ଏକ କଲେଜର ସମସ୍ତ ଛାତ୍ରଙ୍କ ସଙ୍ଗେ ଘନିଷ୍ଠ ସମ୍ପର୍କରେ ଆସିଥିଲେ ଓ ସାମାଜିକ ଉନ୍ନତିକଳ୍ପେ ଯେଉଁସବୁ କାର୍ଯ୍ୟ ସେତେବେଳେ ଦେଶରେ ହେଉଥିଲା, ସେଥିରେ ସେ ଯୋଗ ଦେଇ ଛାତ୍ରମାନଙ୍କୁ ସଂଗଠିତ କରୁଥିଲେ । ତାର କେତେଦିନ ପରେ ବିହାର ଓଡ଼ିଶା କାଉନ୍‌ସିଲର ମେମ୍ବର ପଦ ଖାଲି ପଡ଼ିଲା । ଓଡ଼ିଶାର ଡିଷ୍ଟ୍ରିକ୍ଟ ବୋର୍ଡ ତରଫରୁ ସେ କାଉନ୍‌ସିଲକୁ ଗଲେ । କାଉନ୍‌ସିଲର ସେ ଜଣେ ବିଶିଷ୍ଟ ସଭ୍ୟ ଥିଲେ । ତତ୍‌କାଳୀନ ଓଡ଼ିଶା ବିଭାଗର ଶାସନ ସମ୍ପର୍କରେ ଗଭର୍ଣ୍ଣମେଣ୍ଟଙ୍କର ଯେଉଁ ସବୁ ତ୍ରୁଟି ଥିଲା, ତା ପ୍ରତି କାଉନ୍‌ସିଲର ଦୃଷ୍ଟି ଆକର୍ଷଣ କରିଥିଲେ ।

୧୯୧୭ରେ ମଧୁବାବୁ 'ଦି ଓଡ଼ିଆ' ନାମକ ସାପ୍ତାହିକ ଇଂରାଜୀ ଖବରକାଗଜ ସମ୍ପାଦନା କରିଥିଲେ । ତାର କେତେଦିନ ପରେ ଇଦଗା-ପଡ଼ିଆରେ ଉତ୍କଳ ସମ୍ମିଳନୀର ଏକ ପ୍ରଧାନ ବାର୍ଷିକ ଅଧିବେଶନ ବସିଥିଲା । ସେ ସମ୍ମିଳନୀରେ ବ୍ରଜସୁନ୍ଦର ବାବୁ ପ୍ରଧାନ ଉଦ୍ୟୋକ୍ତା

ଥିଲେ । ତା'ର କେତେଦିନ ପରେ ମଧୁବାବୁ 'ଦି ଓଡ଼ିଆ' କାଗଜର ସମ୍ପାଦନା ଛାଡ଼ି ଦେବାରୁ ବ୍ରଜସୁନ୍ଦର ବାବୁ ତା'ର ସମ୍ପାଦନା ଭାର ନେଲେ । ୧୯୧୮ ରେ ମଧୁବାବୁଙ୍କ ସଭାପତିତ୍ୱରେ ମ୍ୟୁନିସିପାଲିଟିରେ ଉତ୍କଳ ସମ୍ମିଳନୀର ବିଶେଷ ଅଧିବେଶନ ବସିଥିଲା । ସେଥିରେ ମଣ୍ଟାଗୁ-ଚେମସଫୋର୍ଡ ଶାସନ ସଂସ୍କାର ପ୍ରସ୍ତାବରେ ଚର୍ଚ୍ଚା ହୋଇଥିଲା । ଓଡ଼ିଶାକୁ ସବ୍ ପ୍ରଭିନସ୍ କରିବାର ଗୋଟିଏ ପ୍ରସ୍ତାବ ସେଥିରେ ଥିଲା । ବ୍ରଜସୁନ୍ଦର ବାବୁ ସେହି ପ୍ରସ୍ତାବର ସବ୍ ପ୍ରଭିନ୍ସ ସମ୍ବନ୍ଧରେ ଅନେକ କଥା ସେ ସଭାରେ କହିଥିଲେ । ତାଙ୍କର କଥାରେ ସାରମର୍ମ ଥିଲା ଯେ ସମସ୍ତ ଓଡ଼ିଆଭାଷୀ ଅଞ୍ଚଳ ପ୍ରଥମେ ଏକତ୍ରିତ ହେବା ଦରକାର, ତାପରେ ସ୍ୱତନ୍ତ୍ର ପ୍ରଦେଶ ବା ସବ୍ ପ୍ରଭିନ୍ସ ବିଚାରର କଥା । ବ୍ରଜସୁନ୍ଦରବାବୁଙ୍କ ଘରକୁ ଆମ୍ଭେମାନେ ଛାତ୍ର ବା ଯୁବକ ଭାବରେ ଯେତେବେଳେ ଯାଇଅଛୁ, ସେତେବେଳେ ଓଡ଼ିଶାର ଉନ୍ନତି, ଉତ୍କଳ ଦେଶ ମିଶ୍ରଣ ପ୍ରସ୍ତାବ ଛଡ଼ା ଅନ୍ୟ କେଉଁ ବିଷୟରେ କଥାବାର୍ତ୍ତା କରିବାର ଦେଖିନାହୁଁ । ମଧୁବାବୁ ତ ଏତେ ଉଚ୍ଚରେ ଥିଲେ ଯେ ତାଙ୍କ ସଙ୍ଗେ ମିଳାମିଶି କଥାବାର୍ତ୍ତା କରିବା ଯୁବକମାନଙ୍କ ପକ୍ଷରେ ସମ୍ଭବ ନ ଥିଲା । ଗୋପବନ୍ଧୁବାବୁ ତ ସତ୍ୟବାଦୀରେ ରହୁଥିଲେ । କଟକ ସହରରେ ସାଂସ୍କୃତିକ ଆନ୍ଦୋଳନର ବ୍ରଜବାବୁ କେନ୍ଦ୍ର ଥିଲେ ଓ ତାଙ୍କର ସୁରୁଙ୍ଗା ମୁକୁର ପ୍ରେସ, ଏ ଦିଗରେ ଏକ ଜାତୀୟ ପୀଠ ଥିଲା । ତାଙ୍କର ସମ୍ପର୍କରେ ଆସି, ତତ୍କାଳୀନ କଟକ ଯୁବ ସମାଜ ବୁଝିଥିଲେ ଯେ କଟକ, ପୁରୀ, ବାଲେଶ୍ୱର ଛଡ଼ା ଅନ୍ୟାନ୍ୟ ଅଞ୍ଚଳ ଅଛି, ଯେଉଁଠାରେ କି ଓଡ଼ିଆ ଲୋକେ ଅଛନ୍ତି । ସେମାନେ ଓଡ଼ିଶା ବିଭାଗରେ ମିଶିବା ଉଚିତ ।

ଗୋଟିଏ କଥା ଛାଡ଼ିଗଲି । ତା୧ । ୧ । ୧ ୧୬ରେ ମାନ୍ଦ୍ରାଜ କଂଗ୍ରେସ ଫେରନ୍ତା ତତ୍କାଳୀନ ବିଶିଷ୍ଟ ଭାରତୀୟ ନେତା ସୁରେନ୍ଦ୍ରନାଥ ବାନାର୍ଜୀ କଟକରେ ଓହ୍ଲାଇ ଥିଲେ । ସେଦିନ ସନ୍ଧ୍ୟାବେଳେ ଆଜି-କାଲିକାର ଗୌରୀଶଙ୍କର ପାର୍କରେ ଏକ ବଡ଼ ସଭା ହୋଇଥିଲା । ମଧୁବାବୁ, ଗୋପବନ୍ଧୁବାବୁ ଓ ବ୍ରଜସୁନ୍ଦରବାବୁମାନେ ସୁରେନ୍ଦ୍ର ବାନାର୍ଜୀଙ୍କୁ ସ୍ୱାଗତ କରି ବକ୍ତୃତା'ମାନ ଦେଇଥିଲେ ।

ସେଦିନ ବକ୍ତୃତାରେ ବ୍ରଜସୁନ୍ଦରବାବୁ ଯାହା କହିଥିଲେ, ତାହା ଅତି ବଡ଼ କଥା । ଆନ୍ତଃପ୍ରାଦେଶିକ ସହାନୁଭୂତି ଓ ସହଯୋଗ ଦ୍ୱାରା

କିପରି ଭାରତର ସମୂହ ଉନ୍ନତି ହେବ, ଏ ବିଷୟରେ ସେ ବେଶି ଜୋର ଦେଇ କହୁଥିଲେ ଓ ଓଡ଼ିଆ ଦେଶ ମିଶ୍ରଣ ପ୍ରସ୍ତାବ ପ୍ରତି ଭାରତୀୟ ନେତାମାନଙ୍କର କିପରି ଦୃଷ୍ଟି ପଡ଼ିବ, ସେଥିପାଇଁ ସେ ସୁରେନ୍ଦ୍ରନାଥ ବାନାର୍ଜୀଙ୍କୁ ଅନୁରୋଧ କରିଥିଲେ ।

ବ୍ରଜସୁନ୍ଦରବାବୁ ୧୯୧୬ ରୁ ୧୯୨୦ ପର୍ଯ୍ୟନ୍ତ ବିହାର-ଓଡ଼ିଶା କାଉନ୍‌ସିଲର ମେମ୍ବର ଥିଲେ । ତାହାପରେ ମଣ୍ଟାଗୁ-ଚେମସଫୋର୍ଡ ସଂସ୍କାର ପରେ ଯେଉଁ ନୂଆ ବ୍ୟବସ୍ଥାପକ ସଭାମାନ ହେଲ, ସେଥିରେ ସେ କେନ୍ଦ୍ର ବ୍ୟବସ୍ଥାପକ ସଭାକୁ ଓଡ଼ିଶା ତରଫରୁ ଯାଇଥିଲେ । ସେ ସମୟରେ ସେ କେନ୍ଦ୍ର ସରକାରଙ୍କ ଆସେମ୍ବ୍ଲିରେ ଓଡ଼ିଶା ଦେଶମିଶ୍ରଣ କଥା ଉଠାଇଥିଲେ । ତାହା ପରେ ସରକାର ଫିଲିପ ଡଫ କମିଟି ବସାଇ-ଥିଲେ । ତତ୍କାଳୀନ ମାନ୍ଦ୍ରାଜରେ ଥିବା ଓଡ଼ିଆମାନଙ୍କର ଓଡ଼ିଶାରେ ମିଶିବାର କେତେଦୂର ଇଚ୍ଛା, ତାହା ତଦନ୍ତ କରିବା ଭାର ସେ କମିଟିକୁ ଦିଆଯାଇଥିଲା । ସେ କମିଟି ବସିବା ପରେ ବ୍ରଜସୁନ୍ଦରବାବୁ ହଠାତ୍ ମୋ ଗ୍ରାମକୁ ମଣିଷ ପଠାଇ ମୋତେ କଟକ ଡକାଇ ସଙ୍ଗେ ସଙ୍ଗେ କଲିକତା ପଠାଇଥିଲେ ଓ କହିଥିଲେ ଦେଶମିଶ୍ରଣ ବିଷୟକ ସମସ୍ତ ତଥ୍ୟ କଲିକତା ଇମ୍ପିରିୟାଲ ଲାଇବ୍ରେରୀ ବା ଅନ୍ୟାନ୍ୟ ଲାଇବ୍ରେରୀରୁ ଆଣିବାକୁ ହେବ । ମୋତେ କଲିକତା ଖର୍ଚ୍ଚ ସେ ନିଜ ହାତରୁ ଦେଇଥିଲେ । ମୁଁ କଲିକତାରେ ଦୁଇମାସ ଧରି କେତେକ ତଥ୍ୟ ସଂଗ୍ରହ କରି ତାଙ୍କୁ ଆଣି ଦେଇଥିଲି ଓ ତାଙ୍କ କହିବା ମୁତାବକ କଲିକତାର ଦୈନିକ ଖବର-କାଗଜମାନଙ୍କରେ ଓଡ଼ିଶାର ଦାବୀ ସମ୍ବନ୍ଧରେ ଲେଖିଥିଲି । ଏ ସବୁ ଅବଶ୍ୟ ଦେଶମିଶ୍ରଣ ଆନ୍ଦୋଳନର ସହାୟକ ହୋଇଥିଲା ଓ ବ୍ରଜସୁନ୍ଦର ବାବୁଙ୍କ ପ୍ରେରଣାରେ ମୁଁ ଏ ସବୁ କାର୍ଯ୍ୟ କରିଥିଲି ।

ତାହାପରେ କେତେଦିନ ପରେ ସାଇମନ କମିଶନ ବସିଥିଲା । ସାଇମନ କମିଶନ ରିପୋର୍ଟ ପରେ ଯେ ବିଷୟ ବିଲାତର ପାର୍ଲିଅମେଣ୍ଟରେ ଚର୍ଚ୍ଚା ହେଲା, ତା ଫଳରେ ଓଡ଼ିଶା ପାଇଁ ସ୍ୱତନ୍ତ୍ର ପ୍ରଦେଶ ଗଠନ କରିବା ନିମନ୍ତେ ସୀମା ନିର୍ଦ୍ଧାରଣ କରିବା ଆବଶ୍ୟକ ହେଲା ଓ ଓଡ଼ନେଲ ସାହେବଙ୍କ ସଭାପତିତ୍ୱରେ ଏକ କମିଟି ସେଥିପାଇଁ ବସିଲା ।

ବ୍ରଜବାବୁ ସେତେବେଳେ ଉତ୍କଳ ୟୁନିୟନ କମିଟିର ସେକ୍ରେଟାରୀ ଥାନ୍ତି । ତାଙ୍କ ଘରେ ଅଫିସ ଥାଏ । କେତେକ ଯୁବକ ସ୍ୱେଚ୍ଛା

ମାସ ଧରି ଓଡ଼ିଶାର ସୀମା ନିର୍ଦ୍ଧାରଣ ସମ୍ବନ୍ଧୀୟ ତଥ୍ୟମାନ ସଂଗ୍ରହ କରିଥିଲେ । ବ୍ରଜସୁନ୍ଦରବାବୁ ଏ ସମସ୍ତ ଯୁବକମାନଙ୍କୁ ନିର୍ଦ୍ଦେଶ ଦେଉଥାନ୍ତି । ବ୍ରଜସୁନ୍ଦରବାବୁଙ୍କ ଉଦ୍ୟମ ଓ ସଂଗଠନ ହେତୁ ସମସ୍ତ ଆବଶ୍ୟକୀୟ ତଥ୍ୟ ସେ କମିଟି ଆଗରେ ଉପସ୍ଥାପିତ ହୋଇଥିଲା । ଉକ୍ତ କମିଟି ଓଡ଼ିଶାର ସମସ୍ୟା ନିର୍ଦ୍ଧାରଣ ପାଇଁ ଯେଉଁ ସୁପାରିସ କରିଥିଲେ, ତାର ମୂଳରେ ଥିଲା ଉତ୍କଳ ୟୁନିୟନ କମିଟିର ମେମୋରାଣ୍ଡମାନ ।

ସମଗ୍ର ଓଡ଼ିଆ ଜାତି ତରଫରୁ ଓ ବିଭିନ୍ନ ବିଚ୍ଛିନ୍ନ ଅଞ୍ଚଳମାନଙ୍କ ତରଫରୁ ମେମୋରାଣ୍ଡମାନ ଦିଆ ଯାଇଥିଲା । ହଜାରରୁ ଊର୍ଦ୍ଧ୍ୱ ପୃଷ୍ଠା ବ୍ୟାପୀ ବିବରଣମାନ ପ୍ରକାଶ ପାଇଥିଲା । ଓଡ଼ିଶାର ଇତିହାସରେ ବ୍ରଜସୁନ୍ଦରବାବୁଙ୍କର ଏହି ପରାକ୍ରମ ଚିରକାଳ ଜାଜ୍ଜ୍ୱଲ୍ୟମାନ ହୋଇ ରହିଥିବ । ତା ପରେ ନୂତନ ଶାସନ ସଂସ୍କାର ହେଲା । ସେ ଓଡ଼ିଶା ଲେଜିସ୍‌ଲେଟିଭ ଆସେମ୍ବ୍ଲିରେ ମେମ୍ବର ହେଲେ ଓ ସେହି ମେମ୍ବର ଭାବରେ ସେ ଉତ୍କଳ ବିଶ୍ୱବିଦ୍ୟାଳୟ ସଂଗଠନ ସମ୍ପର୍କରେ ଯଥେଷ୍ଟ ଉଦ୍ୟମ କରିଥିଲେ ।

ସଂକ୍ଷେପରେ ମୁଁ ବ୍ରଜସୁନ୍ଦରବାବୁଙ୍କର ରାଜନୈତିକ ଜୀବନର ସୂଚନା ଦେଲି । ଲୋକ ହିସାବରେ ସେ ଅତି ସୁଚରିତ ଥିଲେ । ସେ ଦୟାଳୁ ଥିଲେ ।

ସେତେବେଳେ ଯେକୌଣସି ଓଡ଼ିଆ ଶିକ୍ଷିତ ଯୁବକ ଚାକିରୀବାକିରୀ ଖୋଜୁଥିଲେ, ସେ ବ୍ରଜସୁନ୍ଦରବାବୁଙ୍କ ସାହାଯ୍ୟ ଲୋଡ଼ୁଥିଲେ । ବ୍ରଜସୁନ୍ଦର ବାବୁ ଅନେକ ଓଡ଼ିଆ ଯୁବକଙ୍କୁ ଓଡ଼ିଶାରେ ଏବଂ ତତ୍କାଳୀନ ଗଡ଼ଜାତ-ମାନଙ୍କରେ ଉପଯୁକ୍ତ ଚାକିରୀରେ ନିଯୁକ୍ତ କରାଉଥିଲେ । ଯେକୌଣସି ଗୋଟିଏ ଭଲ ଗୁଣ ଦେଖିଲେ, ସେ ତାଙ୍କୁ ଅତି ଉତ୍ସାହ ଦେଉଥିଲେ ।

ବ୍ରଜସୁନ୍ଦରବାବୁ ଯେତେବେଳେ ବିହାର-ଓଡ଼ିଶା ବ୍ୟବସ୍ଥାପକ ସଭାକୁ ମେମ୍ବର ଭାବରେ ଯାଉଥିଲେ, ବାଟରେ ଗଲାବେଳେ ସେ କଲିକତାର ଓଡ଼ିଆ 'ଲ' ମେସରେ ସମୟେ ସମୟେ ରହୁଥିଲେ । ସେତେବେଳେ 'ଲ' ମେସରେ ରହୁଥିବା ଏମ୍. ଏ. ବି. ଏଲ୍, ଛାତ୍ରମାନଙ୍କ ସଙ୍ଗେ ବରାବର ଓଡ଼ିଶାର ଉନ୍ନତି ସମ୍ବନ୍ଧୀୟ ଚର୍ଚ୍ଚା କରୁଥିଲେ । ତାଙ୍କର

ଚଳାଚଳ ପାଇଁ ଅଭାବ ନଥିଲା । ଦେଶମିଶ୍ରଣ ଆନ୍ଦୋଳନ ପାଇଁ ସେ ଅକାତରେ ପଇସା ଖର୍ଚ୍ଚ କରୁଥିଲେ । ଏହା ତାଙ୍କର ତ୍ୟାଗର ଚିହ୍ନ ।

ଏହାଛଡ଼ା ବ୍ରଜସୁନ୍ଦର ବାବୁ ତତ୍କାଳୀନ ଓଡ଼ିଶାରେ ଅନେକ ସାଂସ୍କୃତିକ ଅନୁଷ୍ଠାନରେ ଯୋଗ ଦେଉଥିଲେ । ଓଡ଼ିଶା ବାହାରୁ କୌଣସି ବିଶିଷ୍ଟ ଲୋକ ଆସିଲେ ସେ ତାଙ୍କୁ ଘରେ ରଖି ଚର୍ଚ୍ଚା କରୁଥିଲେ ଓ ନିଜ ଘରେ ହେଉ ବା କୌଣସି ସଭା ଗୃହରେ ହେଉ ଛାତ୍ର ଓ ଯୁବକମାନଙ୍କୁ ଡକାଇ ଭିନ୍ନ ଭିନ୍ନ ବିଷୟରେ ଚର୍ଚ୍ଚା କରାଉଥିଲେ ।



# ଜାତୀୟବାଦୀ ବ୍ରଜସୁନ୍ଦର ଦାସ

## ଶ୍ରୀ ସଚ୍ଚିଦାନନ୍ଦ କାନୁନଗୋ

ଆଧୁନିକ ଓଡ଼ିଶାର ପ୍ରଥମ ନିର୍ମାତା ବୋଲି ଯେଉଁ ତିନିଜଣଙ୍କୁ ଅଭିହିତ କରାଯାଏ, ସେମାନଙ୍କ ମଧ୍ୟରୁ ସ୍ୱର୍ଗତ ବ୍ରଜସୁନ୍ଦର ଅନ୍ୟତମ ହୋଇଥିଲେ ସୁଦ୍ଧା ବଡ଼ ଦୁଃଖର ବିଷୟ ଯେ ଏପର୍ଯ୍ୟନ୍ତ ତାଙ୍କ ବିଷୟରେ ସବିଶେଷ ଆଲୋଚନା ହୋଇନାହିଁ । ବଡ଼ ଆନନ୍ଦର ବିଷୟ ଯେ, ଉତ୍କଳ ସାହିତ୍ୟ ସମାଜ ପକ୍ଷରୁ ତାଙ୍କ ସମ୍ପର୍କରେ ଆଲୋଚନା କରିବା ପାଇଁ "ବ୍ରଜସୁନ୍ଦର ସ୍ମରଣିକା" ପ୍ରକାଶ ହେବାକୁ ଯାଉଛି ।

ମୁଁ ବା ତାଙ୍କ ବିଷୟରେ ଲେଖିବି କଣ ? ମୋ ବୟସର ଲୋକେ ଯେତେବେଳେ ସାଧାରଣ ଜୀବନରେ ଆଗ୍ରହ ପ୍ରକାଶ କରିବାକୁ ଆରମ୍ଭ କଲୁଁ, ତାହାର ବହୁପୂର୍ବରୁ ସ୍ୱର୍ଗତ ଗୋପବନ୍ଧୁ ଏବଂ ସ୍ୱର୍ଗତ ମଧୁସୂଦନଙ୍କ ମୃତ୍ୟୁ ହୋଇଥିଲା । ବ୍ରଜସୁନ୍ଦରବାବୁ ଜୀବନ୍ତ ଥିଲେ ସୁଦ୍ଧା ସେ ଜୀବନର ଶେଷ ସମୟରେ ଅସି ପହଞ୍ଚିଥିବାରୁ ତାଙ୍କର ସାଧାରଣ ଜୀବନ ସମ୍ପର୍କରେ ଜାଣିବାକୁ ବିଶେଷ ସୁବିଧା ମୋ ପକ୍ଷରେ କିଛି ନଥିଲା । ତେବେସୁଦ୍ଧା ମୁଁ ଯେଉଁ ସାମାନ୍ୟ କେତେକ ଘଟଣା ଜାଣେ, ତାହା ଏଠାରେ ଲିପିବଦ୍ଧ କରୁଛି ।

୧୯୪୧ ସସିହା କଥା । ବାପା ଏବଂ ଅନ୍ୟ କଂଗ୍ରେସ ଲୋକେ ଯେଉଁମାନଙ୍କୁ କି ମୁଁ ଭଲଭାବରେ ଜାଣିଥିଲି ଓ ସତ୍ୟାଗ୍ରହ ସମ୍ପର୍କରେ ଆସିଥିଲି, ସେମାନେ ସମସ୍ତେ ବ୍ୟକ୍ତିଗତ ଆନ୍ଦୋଳନ ଯୋଗୁଁ ଜେଲ୍‌ରେ ଥାଆନ୍ତି । ଏହି ସମୟରେ ମହାତ୍ମା ଗାନ୍ଧୀଙ୍କର ନେତୃତ୍ୱରେ ସ୍ୱର୍ଗତ ଦୀନବନ୍ଧୁ ସି. ଏମ୍. ଆଣ୍ଡ୍ରୁଜ୍‌ଙ୍କ ସ୍ମୃତି ଉଦ୍ଦେଶ୍ୟରେ ପାଣ୍ଠି ସଂଗ୍ରହ କରାଯିବା ପାଇଁ ଉଦ୍ୟମ ହେଲା । ଓଡ଼ିଶା ପାଇଁ ଅନ୍ଦ୍ରୁଜ ସାହେବ ଯଥେଷ୍ଟ କରିଥିଲେ ମଧ୍ୟ ତାଙ୍କ ସମ୍ପର୍କରେ ଆସିଥିବା ଅଧିକାଂଶ ଲୋକେ ଜେଲରେ ଥିବାରୁ ଏ ଦିଗରେ କୌଣସି ଉଦ୍ୟମ ଦେଖାଦେଲା ନାହିଁ । ଏଥିପାଇଁ କିଛି କରାଯିବା ଉଚିତ ଭାବି ମୁଁ ସେତେବେଳେ ବାହାରେ ଥିବା ଶ୍ରୀ ରାଧାନାଥ ରଥଙ୍କୁ ଯାଇ କହିଲି । ତାଙ୍କ ପରାମର୍ଶରେ ସେ ନିଜେ ସମ୍ପାଦକ, ମୁଁ ଏବଂ ମୋର ଭାଇ ଶ୍ରୀ ଅମିତାଭ ମହାପାତ୍ର ଯୁଗ୍ମ ସମ୍ପାଦକ ଥାଇ ଗୋଟିଏ ପାଣ୍ଠି ସଂଗ୍ରହ କମିଟି ଗଠିତ ହେଲା । ପ୍ରଥମ କାର୍ଯ୍ୟ ସ୍ୱରୂପ ସ୍ୱର୍ଗତ ବ୍ରଜସୁନ୍ଦର ଦାସ, ଆଚାର୍ଯ୍ୟ ହରିହର ଦାସ ଏବଂ ଶ୍ରୀ ରାଧାନାଥ ରଥଙ୍କ ଦସ୍ତଖତରେ ଗୋଟିଏ ନିବେଦନ ପତ୍ର ବଣ୍ଟାଯିବା ପାଇଁ ସ୍ଥିର କରାଗଲା । ରାଧାନାଥ ବାବୁଙ୍କ ଉଦ୍ୟମରେ ସେତେବେଳେ ନିମ୍‌ଚୌଡ଼ିରେ ଥିବା ସମାଜ ପ୍ରେସରେ ନିବେଦନଟି ମାଗଣା ଛପାଯିବା ପରେ ବ୍ରଜସୁନ୍ଦର ବାବୁଙ୍କ ଦସ୍ତଖତ ଆଣିବା ପାଇଁ ରାଧାନାଥବାବୁ ଏବଂ ମୁଁ ଦିନେ ସନ୍ଧ୍ୟାବେଳେ ତାଙ୍କ ଘରକୁ ଗଲୁ । ସେ ପ୍ରତ୍ୟେକ ନିବେଦନ ପତ୍ରମାନ ଦସ୍ତଖତ କଲେ ଏବଂ ସେହିଦିନଠାରୁ କମିଟିର କାର୍ଯ୍ୟ ସମ୍ପର୍କରେ ପୁଙ୍ଖାନୁପୁଙ୍ଖ ଖବର ନେଉଥାଆନ୍ତି । ତାଙ୍କୁ ଖବର ଦେବାକୁ ମୁଁ ପ୍ରାୟ ପ୍ରତିଦିନ ତାଙ୍କ ନିକଟକୁ ଯାଉଥିଲି ।

୧୯୨୦ ମସିହାରେ ଗାନ୍ଧିଜୀ କଂଗ୍ରେସର ନେତୃତ୍ୱ ନେବାପରେ ସେ ପର୍ଯ୍ୟନ୍ତ କଂଗ୍ରେସର ନେତୃତ୍ୱରେ ଥିବା ନରମପନ୍ଥୀମାନେ ତା' ପୂର୍ବରୁ ଅଲଗା ହୋଇଗଲେ । ସେମାନଙ୍କ ଉଦ୍ୟମରେ ଉଦାରନୀତି ମାନାଦଳ ପ୍ରତିଷ୍ଠିତ ହୋଇ ଭାରତର ରାଜନୈତିକ ବାତାବରଣରେ ଗୋଟିଏ ନୂତନ ଚିନ୍ତାଧାରାର ଆବିର୍ଭାବ ହେଲା । ଉଭୟ ଗୋଷ୍ଠୀ ଅର୍ଥାତ୍ କଂଗ୍ରେସ ଓ ମାନାଦଳ ଲୋକଙ୍କର ଦେଶପ୍ରେମ ବିଷୟରେ ସନ୍ଦେହ କରିବାର କିଛି ନଥିଲେ ମଧ୍ୟ ଗାନ୍ଧିଜୀଙ୍କ ନେତୃତ୍ୱରେ କଂଗ୍ରେସ ଲୋକେ ପ୍ରତ୍ୟକ୍ଷ ସଂଗ୍ରାମ ଜରିଆରେ ଦାବୀ ହାସଲ କରିବାକୁ ଚାହୁଁଥିବା ସମୟରେ ସେମାନେ

ଇଂରେଜ ସରକାରଙ୍କ ସହିତ ସହଯୋଗ କରି ସ୍ୱାୟତ୍ତ ଶାସନ ଲାଭ କରିବାକୁ ଚାହୁଁଥିଲେ । ଏହି ମତଭେଦ ସତ୍ତ୍ୱେ ୧୯୪୨ ମସିହାରେ ଗାନ୍ଧିଜୀଙ୍କ ନେତୃତ୍ୱରେ ସ୍ମରଣୀୟ 'ଭାରତ ଛାଡ଼ ଆନ୍ଦୋଳନ' ଆରମ୍ଭ ହେବା ପରେ ଭାରତରେ ଶ୍ରୀରାଧା ଗୋପପୁରରେ କୌଣସି କୃଷ୍ଣନାମ ଶୁଣିବେ ନାହିଁ ବୋଲି ପ୍ରତିଜ୍ଞା କରିଥିବାର ଯେଉଁ ଉପାଖ୍ୟାନ ଅଛି, ସେହିପରି ଭାରତବର୍ଷରେ କଂଗ୍ରେସ ନାମ ଉଚ୍ଚାରଣ କରିବାକୁ ଯେପରି କେହି ନ ରୁହନ୍ତି, ସେଥିପାଇଁ ଇଂରେଜ ସରକାର ସମସ୍ତଙ୍କୁ କାରାରୁଦ୍ଧ କରିଦେବା ପରେ ୧୯୧୮ ମସିହାରୁ କଂଗ୍ରେସରୁ ଅଲଗା ହୋଇଥିବା ଏହି ମାନ୍ଦାଦଳର ଲୋକେ ଭାରତର ଜାତୀୟତାବାଦକୁ ଜୀବନ୍ତ ରଖିବା ପାଇଁ ଯାହା କରିଛନ୍ତି, ତାହା ଭୁଲିବାର ନୁହେଁ । ସେତେବେଳେ ଦେଶରେ ଯେଉଁ ଅକଥନୀୟ ଅତ୍ୟାଚାର ଇଂରେଜ ସରକାରଙ୍କ ପକ୍ଷରୁ ଚାଲିଲା, ତାହା ବିରୁଦ୍ଧରେ ପ୍ରତିବାଦ କରି କଂଗ୍ରେସ ଲୋକଙ୍କୁ ମୁକ୍ତି ଦେଇ ଭାରତ ସହିତ ମିଳାମିଶା କରିବା ପାଇଁ ଯେଉଁ ଧାରାବାହିକ ଆନ୍ଦୋଳନ ଚାଲିଲା ତାହାର ନେତୃତ୍ୱ ନେଲେ ମାନ୍ଦାଦଳ ଲୋକେ । ଏକ ଦିଗରେ କମ୍ୟୁନିଷ୍ଟ-ମାନଙ୍କର ଯୁଦ୍ଧକାଳୀନ ଦେଶଦ୍ରୋହାତ୍ମକ ଭୂମିକା, ମୁସ୍‌ଲିମ୍ ଲିଗ୍‌ର ଭାରତ ବିଭକ୍ତ ପାଇଁ ଆନ୍ଦୋଳନ, କଂଗ୍ରେସ ଲୋକଙ୍କ ଅନୁପସ୍ଥିତି ଏବଂ ସର୍ବୋପରି ଇଂରେଜ ସରକାରଙ୍କ ଅକଥନୀୟ ଅତ୍ୟାଚାର ପରିସ୍ଥିତିରେ ଭାରତ ଜାତୀୟତାବାଦର ଆଲୋକ ଜାଳି ରଖିବାର ଦାୟିତ୍ୱ ଏହି ମାନ୍ଦା-ଦଳର ଲୋକମାନଙ୍କ ଉପରେ ପଡ଼ିଥିଲା ଏବଂ ସେମାନେ ତାହା ସଫଳତାର ସହିତ ପାଳିଥିଲେ ।

କିନ୍ତୁ ଏହି ପରିସ୍ଥିତିରେ ଓଡ଼ିଶାର କେତେକ କଂଗ୍ରେସ ଲୋକେ ଯେଉଁ ଲଜ୍ଜାଜନକ ଭୂମିକା ଗ୍ରହଣ କଲେ, ତାହା କାଳକାଳକୁ ଭାରତ ସ୍ୱାଧୀନତା ଆନ୍ଦୋଳନର ଇତିହାସରେ କଳାଦାଗ ହୋଇ ରହିଥିବ । ୧୯୩୯ ମସିହାରେ ଇଂରେଜ ସରକାର ଭାରତକୁ ଭାରତୀୟ ଲୋକମାନଙ୍କର ବିନା ପରାମର୍ଶରେ ଯୁଦ୍ଧରତ ଦେଶ ବୋଲି ଘୋଷଣା କଲେ ଏବଂ ଗଣତନ୍ତ୍ରର ରକ୍ଷାପାଇଁ ଯୁଦ୍ଧ କରୁଛନ୍ତି ବୋଲି ଉଦ୍ଦାମ ବକାଉଥିଲେ ସୁଦ୍ଧା ତାହା ଭାରତବର୍ଷକୁ କିଭଳିଭାବେ ପ୍ରଯୁଜ୍ୟ ହେବ, ତାହା ଘୋଷଣା କରିବାକୁ ଭାରତ ଜାତୀୟ କଂଗ୍ରେସ ଦେଇଥିବା ଆହ୍ୱାନର ସନ୍ତୋଷ-ଜନକ ଜବାବ ଦେଲେ ନାହିଁ । ଏହାର ପ୍ରତିବାଦ ସ୍ୱରୂପ ତତ୍କାଳୀନ

ଭାରତର ଏଗାର ଗୋଟି ପ୍ରଦେଶରୁ ଆସାମ, ଓଡ଼ିଶା, ମାନ୍ଦ୍ରାଜ, ବମ୍ବେ, ମଧ୍ୟପ୍ରଦେଶ, ବିହାର ଯୁକ୍ତପ୍ରଦେଶ ଏବଂ ଉତ୍ତର ପଶ୍ଚିମ ସୀମାନ୍ତ ପ୍ରଦେଶରେ ଗଠିତ ହୋଇଥିବା କଂଗ୍ରେସ ମନ୍ତ୍ରିମଣ୍ଡଳମାନେ ଇସ୍ତଫା ଦେଲେ ଏହାର ଫଳ ସ୍ୱରୂପ କଣ ହେଲା ବା ନହେଲା ତାହା ୧୯୪୭ ରେ ପ୍ରମାଣିତ ହୋଇଥିଲେ ସୁଦ୍ଧା ସେତେବେଳେ ଅନ୍ତତଃ ଏତିକି ପ୍ରମାଣିତ ହୋଇଥିଲା ଯେ, ଭାରତୀୟ ଜନମତ ଇଂରେଜ ସରକାରଙ୍କ ସହିତ ସହଯୋଗ କରୁନାହିଁ ଓ ତାହାର ନିଦର୍ଶନ ସ୍ୱରୂପ କେବଳ ଯେଉଁ ତିନିଗୋଟି ପ୍ରଦେଶରେ ଇଂରେଜ ସରକାରଙ୍କ ଦ୍ୱାରା ପରିପୁଷ୍ଟ ହୋଇ ତତ୍‌କାଳୀନ ମୁସ୍‌ଲିମ୍‌ଲିଗ୍‌ ମନ୍ତ୍ରିମଣ୍ଡଳ ଗଠନ କରିଥିଲେ, ସେହି ତିନିଗୋଟି ପ୍ରଦେଶ ଛଡ଼ା ଅନ୍ୟ ପ୍ରଦେଶରେ କେଉଁଠାରେ ଲୋକ-ପ୍ରତିନିଧି ଶାସନ ନଥିଲା ଇଂରେଜ ପାର୍ଲାମେଣ୍ଟର ବାହୁଛାୟା ତଳେ ଲାଟ ଶାସନ ଚାଲୁଥିଲା ।

କିନ୍ତୁ ବଡ଼ ଦୁଃଖ ଓ ଲଜ୍ଜାର ବିଷୟ ଯେ, ୧୯୪୧ ମସିହାରେ କଂଗ୍ରେସ ଲୋକେ ଭାରତର ସ୍ୱାଧୀନତା ଦାବୀ ଉଦ୍ଦେଶ୍ୟରେ ବ୍ୟକ୍ତିଗତ ସତ୍ୟାଗ୍ରହ ଚଳାଇଥିବା ସମୟରେ ବାହାରେ ଥିବା କେତେକ କଂଗ୍ରେସ ବ୍ୟବସ୍ଥାପକ ସଭା ଦଳର ସଭ୍ୟ ତତ୍‌କାଳୀନ ବିରୋଧୀ ପକ୍ଷରେ ଯୋଗ-ଦେଇ ମିଳିତ ମନ୍ତ୍ରିମଣ୍ଡଳ ଗଠନ କରି ଓଡ଼ିଶାକୁ ଇଂରେଜଙ୍କ ଦ୍ୱାରା ପରିପୁଷ୍ଟ ଲିଗ୍‌ ଶାସିତ ପ୍ରଦେଶମାନଙ୍କର ସ୍ତରକୁ ନେଇଗଲେ । କେତେକ ଯୁକ୍ତି କରନ୍ତି ଯେ, ଏହି ମିଳିତ ମନ୍ତ୍ରିମଣ୍ଡଳ ଯୋଗୁଁ ଉତ୍କଳ ବିଶ୍ୱବିଦ୍ୟାଳୟ ଏବଂ ମେଡିକାଲ କଲେଜ ସମ୍ଭବପର ହୋଇଥିବାରୁ ଏହାଦ୍ୱାରା ଓଡ଼ିଶାର ମଙ୍ଗଳ ହୋଇଛି । ଏହି ସଂପର୍କରେ ସ୍ମରଣୀୟ ଯେ, ସ୍ୱାଧୀନ ଭାରତରେ ବର୍ଷକୁ ଗଣ୍ଡା ଗଣ୍ଡା ବିଶ୍ୱବିଦ୍ୟାଳୟ ଓ ମେଡିକାଲ କଲେଜମାନ ହେଉଛି । ତେଣୁ ଏହା କିଛି ବଡ଼ କଥା ନୁହେଁ । ବଡ଼ କଥା ହେଉଛି ଯେ, ଭାରତ ଜାତୀୟବାଦ ବନାମ ଇଂରେଜ ସାମ୍ରାଜ୍ୟବାଦଙ୍କ ମଧ୍ୟରେ ଯେଉଁ ଶେଷ ସଂଗ୍ରାମ ଚାଲିଥିଲା ଏବଂ ଯେଉଁଥିରେକି ଭାରତ ଜାତୀୟବାଦ ସଫଳତା ଲଭିଥିଲା, ତହିଁରେ ଓଡ଼ିଶାର ଲୋକେ କେତେକ କଂଗ୍ରେସ ଲୋକଙ୍କର ବିଶ୍ୱାସଘାତକତା ଫଳରେ ଇଂରେଜ ସରକାରଙ୍କର ହାତର ବାରଣୀ ହୋଇଥିଲେ । ଏହା ଯୁଗ ଯୁଗ ଧରି ଇତିହାସରେ ଲିପିବଦ୍ଧ ହୋଇ ରହିଥିବ ।

୧୯୪୨ ମସିହାର ସେହି ଅବିସ୍ମରଣୀୟ ଭାରତ ଜାତୀୟବାଦର ଶେଷ ସଂଗ୍ରାମ ବା ଜନତାର ଅନ୍ତିମ ଜାଗରଣ ପରେ ଦେଶରେ ଯେଉଁ ଭୟଂକର ଦୃଶ୍ୟ ଦେଖିବାକୁ ମିଳିଥିଲା, ତାହା ମନେ ପଡ଼ିଲେ ଆଜି ବି ଲୋମ ଟାଙ୍କୁରି ଉଠେ । ଭାରତ ସାରା ଏହି ତାଣ୍ଡବଲୀଳା ଚାଲିଥିବା ସମୟରେ ଭାରତ ଜାତୀୟବାଦ ତିଷ୍ଠିବ କି ସବୁଦିନ ପାଇଁ ଲୀନ ହୋଇଯିବ, ଏହି ପ୍ରଶ୍ନ କେବଳ ଭାରତବର୍ଷରେ ଦଣ୍ଡାୟମାନ ନ ହୋଇ ଦୁନିଆଁ ସମ୍ମୁଖରେ ଦଣ୍ଡାୟମାନ ହୋଇଥିବା ସମୟରେ ଏକମାତ୍ର ପ୍ରଦେଶ ଓଡ଼ିଶାରେ ମିଳିତ ମନ୍ତ୍ରିମଣ୍ଡଳ ଗଠିତ ହୋଇ ଇଂରେଜ ସରକାରଙ୍କୁ ତାଙ୍କର ଉଦ୍ଦେଶ୍ୟ ସାଧନ ଦିଗରେ ସହାୟତା କରିଗଲା ।

ଏହି ଦୁର୍ଦ୍ଦିନରେ ଭାରତବର୍ଷରେ କଂଗ୍ରେସ ଲୋକଙ୍କ ଅନୁପସ୍ଥିତିରେ ଜାତୀୟବାଦର ଶିଖା ଜାଳି ରଖିବାର ଦାୟିତ୍ୱ ଯେପରି ମାନ୍ଦ୍ରାଜ ଦଳର ଲୋକଙ୍କ ଉପରେ ପଡ଼ିଥିଲା ଏବଂ ଓଡ଼ିଶାରେ ତାହା ଯେଉଁ ଦୁଇଜଣ ଜାଳି ରଖିଥିଲେ ସେମାନେ ହେଉଛନ୍ତି ସ୍ୱର୍ଗତ ବ୍ରଜସୁନ୍ଦର ଦାସ ଏବଂ ଖଲିକୋଟର ରାଜା ଶ୍ରୀ ରାମଚନ୍ଦ୍ର ଦେବ । ସମସ୍ତ କଂଗ୍ରେସ ଲୋକେ ଜେଲ୍‌ରେ ଥିବାରୁ ଏବଂ କମ୍ୟୁନିଷ୍ଟମାନେ ଇଂରେଜସରକାରଙ୍କୁ ଭାରତ ଜାତୀୟତା ବିରୁଦ୍ଧରେ ସାହାଯ୍ୟ କରୁଥିବା ସମୟରେ ଓଡ଼ିଶା ବ୍ୟବସ୍ଥାପକ ସଭାରେ ଯେଉଁ ଦୁଇଜଣ ତତ୍‌କାଳୀନ ମନ୍ତ୍ରିମଣ୍ଡଳର ଅଗଣତାନ୍ତ୍ରିକ କାର୍ଯ୍ୟକୁ ସମାଲୋଚନା କରି ଭାରତ ଜାତୀୟବାଦର ଶିଖା ଓଡ଼ିଶାରେ ଜାଳିରଖିଥିଲେ ସେମାନେ ହେଉଛନ୍ତି ସ୍ୱର୍ଗତ ବ୍ରଜସୁନ୍ଦର ଏବଂ ଖଲିକୋଟର ରାଜା । ୰ ବ୍ରଜସୁନ୍ଦର ବାବୁଙ୍କର କଂଗ୍ରେସ ସହିତ ପୂର୍ବରୁ କୌଣସି ସଂପର୍କ ନ ଥିଲେ ସୁଦ୍ଧା ଏବଂ ତାଙ୍କର ରାଜନୈତିକ ଜୀବନ ଓଡ଼ିଶାକୁ କେନ୍ଦ୍ରକରି ମଧୁବାବୁଙ୍କ ନେତୃତ୍ୱରେ ଗଠିତ ହୋଇଥିଲେ ସୁଦ୍ଧା ୧୯୪୨।୪୩ ରେ ଭାରତ ଜାତୀୟବାଦର ସେ ଯେପରି ପୂଜାରୀ ହୋଇ ପାରିଥିଲେ, ସେଥିପାଇଁ ସେ ଚିରକାଳ ନମସ୍ୟ ହୋଇ ରହିଥିବେ ।

ଏହି ସମୟରେ ମୁଁ ପ୍ରାୟ ପ୍ରତିଦିନ ସଂଧ୍ୟାବେଳେ ମୁକୁର ପ୍ରେସରେ ଥିବା ତାଙ୍କ ଘରକୁ ଯାଉଥିଲି ଏବଂ ବିଭିନ୍ନ ବିଷୟରେ ତାଙ୍କ ସହିତ ଆଲୋଚନା କରିବାର ସୁବିଧା ଓ ସୁଯୋଗ ପାଉଥିଲି । ମନେଅଛି ଓଡ଼ିଶାରେ ଚାଲିଥିବା ମେରି ରାଜ୍ୟ ଶାସନରେ ସେ ବ୍ୟତିବ୍ୟସ୍ତ ହୋଇ

ପଡ଼ ଦିନେ ସଂଧ୍ୟାବେଳେ ମୋର ଅବସ୍ଥା ବର୍ଣ୍ଣନା କରିଯାଇଥିବା ଗୋଟିଏ ଲେଖା ପଢ଼ି କିପରି କାନ୍ଦି ପକେଇଲେ ଓ ସେତେବେଳକାର ବିଲାତ ମନ୍ତ୍ରିମଣ୍ଡଳର ସହକାରୀ ପ୍ରଧାନ ମନ୍ତ୍ରୀ ମିଷ୍ଟର ଏଟ୍ଲିଙ୍କ ସହ ତାଙ୍କର ପରିଚୟ ଥିବାରୁ ତାହା ତାଙ୍କ ନିକଟ ପଠାଇବାକୁ ସ୍ଥିର କରିଥିଲେ । ବଡ଼ ଦୁଃଖ ଏବଂ ପରିତାପର ବିଷୟ ଯେ ଏହାର ଅଳ୍ପଦିନପରେ ତାଙ୍କର ମୃତ୍ୟୁ ହେବାରୁ ଉକ୍ତ ପ୍ରବନ୍ଧଟି ସେ ମିଷ୍ଟର ଏଟ୍ଲିଙ୍କ ନିକଟ ପଠାଇ ପାରିଲେ ନାହିଁ ।

ତାହାଛଡ଼ା ବିଂଶ ଶତାବ୍ଦୀର ପ୍ରଥମ ଭାଗରେ ଭାରତର ସ୍ୱାଧୀନତା ଉଦ୍ଦେଶ୍ୟରେ ଯେଉଁ ସନ୍ତ୍ରାସବାଦ ଆନ୍ଦୋଳନର ସୂତ୍ରପାତ ହୋଇଥିଲା, ସେହି ଆନ୍ଦୋଳନର ଓଡ଼ିଶାରେ ବିଶେଷ ପ୍ରଭାବ ପଡ଼ିପାରି ନଥିଲେ ସୁଦ୍ଧା ଯାହା ପଡ଼ିଥିଲା, ତାହାର ପୃଷ୍ଠପୋଷକ ଥିଲେ ବ୍ରଜସୁନ୍ଦର ବାବୁ । ଅବଶ୍ୟ ଏ ବିଷୟରେ ଏପର୍ଯ୍ୟନ୍ତ ବିଶେଷ କିଛି ଆଲୋକପାତ ହୋଇ ନ ଥିଲେ ସୁଦ୍ଧା ଯେଉଁମାନେ ତାଙ୍କର ଜୀବନୀ ଲେଖିବେ, ଏ ବିଷୟରେ ଉଚିତ ଗବେଷଣା ନ କଲେ ଭାରତର ଜାତୀୟତାରେ ଓଡ଼ିଶାର ଅଂଶ ସମ୍ପର୍କରେ ଗୋଟିଏ ପ୍ରଧାନ ଅଭାବ ରହିଯିବ ।

ସେତେବେଳେ ଯେଉଁ ଶ୍ରେଣୀର ଲୋକେ ଇଂରେଜ ସରକାରଙ୍କଠାରୁ ପଦବୀମାନ ପାଉଥିଲେ, ସେମାନଙ୍କ ମାନ ତୁଳନାରେ ବ୍ରଜସୁନ୍ଦର ବାବୁଙ୍କର ମାନ୍ ଯଥେଷ୍ଟ ଉଚ୍ଚ ଥିଲେ ସୁଦ୍ଧା ସେ କୌଣସି ପଦବୀ ଇଂରେଜ ସରକାରଙ୍କ ଠାରୁ ପାଇ ନଥିଲେ ।

ଶ୍ରୀ ହରେକୃଷ୍ଣ ମହତାବ ଅହମ୍ମଦ ନଗର ଜେଲ୍‌ରୁ ତାଙ୍କ ଭାଇଙ୍କ ନିକଟକୁ ଓଡ଼ିଶାର ବିଶିଷ୍ଟ ଲୋକମାନଙ୍କ ମୃତ୍ୟୁରେ ଦୁଃଖ ପ୍ରକାଶ କରି ଚିଠି ଲେଖୁଥିଲେ । ସେ ବ୍ରଜସୁନ୍ଦର ବାବୁଙ୍କ ମୃତ୍ୟୁ ପରେ ଯେଉଁ ଚିଠି ସେ ସମ୍ପର୍କରେ ଲେଖିଥିଲେ, ତାହା ତାଙ୍କ ଭାଇଙ୍କୁ ଦିଆଯାଇ ନଥିଲା । ଅର୍ଥାତ ତାହା ସରକାର ଜବତ୍ କରିନେଇଥିଲେ । ଏ ସବୁ ବିଷୟରେ ଆବଶ୍ୟକୀୟ ଗବେଷଣା ହେବା ଦରକାର । ଏତିକି ଲେଖି ଗାନ୍ଧିଜୀଙ୍କ ସମ୍ପର୍କରେ ନ ଆସିଥିବା ଓଡ଼ିଶାର ଏକମାତ୍ର ଜାତୀୟବାଦୀଙ୍କର ସ୍ମୃତି ଉଦ୍ଦେଶ୍ୟରେ ମୁଁ ମୋର ସଭକ୍ତି ପ୍ରଣାମ ଜଣାଉଛି ।

# ୮ ବ୍ରଜସୁନ୍ଦରଙ୍କ ବୈଶିଷ୍ଟ୍ୟ

ଶ୍ରୀ ମଧୁ ମହାନ୍ତି

ବହୁବାର ଶତ୍ରୁ ହସ୍ତରେ ପରାସ୍ତ ହୋଇ, ଇତିହାସରେ ବିସ୍ମୃତ, ମାତ୍ର ଶତ୍ରୁ-ସମ୍ମୁଖରେ—''ମେରା ଜୁତା ଘୁମ ଗଇ''ର ଅପ୍ରତିହତ ନବାବ, ଓ୍ୟାଜିଦ ଅଲ୍ଲିଙ୍କୁ ଏବେ ବି କିମ୍ବଦନ୍ତୀରେ ଅମର କରି ରଖିଛି । ପରାଜିତ ପ୍ରତି ପକ୍ଷପାତ ଦୁଷ୍ଟ ନିଷ୍ଠୁର ଇତିହାସ, ମରଣଶୀଳ ମାନବର ଅମୃତର ସନ୍ଧାନକୁ ବାରମ୍ବାର ବିପର୍ଯ୍ୟସ୍ତ କରିଥିଲେ ବି, ଏକାବେଳକେ ବିଲୁପ୍ତ କରି ପାରିନାହିଁ । ''ମିଥିଳାୟାଂ ପ୍ରଦୀପ୍ତାୟାଂ, ନ-ମେ ଲଭଃ, ନ ମେ କ୍ଷତିଃ''......ଉଚ୍ଚାରଣରେ, ରାଜ୍ୟଧର ଜନକ, 'ରାଜର୍ଷି' ରୂପେ ମାନବ-ସଭ୍ୟତାକୁ, ଭାରତ-ଦର୍ଶନର ଗୌରବୋଜ୍ଜ୍ୱଳ ଅବଦାନ ।

ବିଜ୍ଞାନର ବେଗରେ, ଆମେ ଖାଲି ପାଞ୍ଜିରୁ 'କେଲେଣ୍ଡର'କୁ ଉଠିନାହୁଁ, ବା ପାଞ୍ଜିର ଦେବଦେବୀଙ୍କ ପୂଜା ଛବିରୁ, 'କେଲେଣ୍ଡର'ରେ ଶଶି-ତାରକାଙ୍କ-ଚିତ୍ର-ଭରା ପ୍ରତିକୃତିକୁ ପହଞ୍ଚି ନାହୁଁ; ଖାଲି କାନ୍ଥ-ଘଡ଼ିରୁ, ହାତ ଘଡ଼ିକୁ ଉଠିନୁ, ହାତ ଘଡ଼ି ଭିତରେ, ଘଣ୍ଟା, ମିନିଟ୍, ସେକେଣ୍ଡ କଣ୍ଟା ସାଙ୍ଗକୁ, ତାରିଖ ଘର ବି ଖଞ୍ଜିଛେ । ଏଇ ହାତ-ଘଡ଼ିକୁ ପୁଣି, ଖାଲି ଦିନରେ ନୁହେଁ, ରାତିରେ ଦେଖିବା ଲାଗି,

'ଅନ୍ଧାର-ଉଜ୍ଜ୍ୱଳ' ଉପାତ୍ତ୍ୱନ ଲଗାଇଛନ୍ତି । ଦୈନିକ ବା ସାପ୍ତାହିକ ଥରେ 'ଦମ୍' ଦେବା ଶ୍ରମ ଲାଘବ ଲାଗି, କାନ୍ଥ ଘଣ୍ଟାକୁ ଯେପରି ବିଜୁଳି ଚାଳିତ କରିଛନ୍ତି, ହାତ-ଘଣ୍ଟାକୁ ସେହିପରି 'କବ୍‌ଜ ଚାଳିତ' କରିଛନ୍ତି । ହାତର ଏଇ କବ୍‌ଜାରେ କେଜାଣି କେଉଁ ଶକ୍ତି ଅଛି ଯେ, ବିବାହ-ଗ୍ରନ୍ଥି ଠାରୁ ରକ୍ଷୀ-ବନ୍ଧନ ଯାଏ, ପୁଣି ଘଣ୍ଟିକେ ଝୁଲାଇ ରଖିବା ଲାଗି ବେକ ସଙ୍ଗେ ହାତର ଏଇଠି ଘଟି-ଫାଶ । ବିଜ୍ଞାନୀଙ୍କ ମତରେ ଦେହ ସାକର ବିଜୁଳି ଘର, ହାତ ଗଣ୍ଠିରେ ବେଶି ।

ଏଇ ଘଣ୍ଟା କଣ୍ଟା ସଙ୍ଗେ ତାଳ ମିଳାଇ ଚାଲିବା ଲାଗି ଯାହାଙ୍କ ଟେବୁଲ ଉପରେ "ଏନ୍‌ଗେଜମେଣ୍ଟ" ପ୍ୟାଡ୍ ବା କର୍ମ-ସୂଚୀ ଥୁଆ, ସେଇ ଯନ୍ତ୍ର-ଚାଳିତ ସମାଜ ସୁନ୍ଦର ଜୀବଙ୍କ ଠାରୁ, ନିଜ ପ୍ରାଣ-ସ୍ଫୂର୍ତ୍ତିରେ ବ୍ରଜସୁନ୍ଦରଙ୍କ ସ୍ୱନାମ ସାର୍ଥକ । ସେ ହାତରେ ଘଡ଼ି ବାନ୍ଧି ଚଳନ୍ତି ନଥିଲେ ବା ତାଙ୍କ ଟେବୁଲ ଉପରେ "ଏନଗେଜମେଣ୍ଟ" ପ୍ୟାଡ୍ ରହୁ ନଥିଲା । ସେ ଥିଲେ ଅନ୍ତରରେ ଆତ୍ମାରାମ । ମନର ମଉଜରେ ବାର ତାରିଖ ଘଡ଼ି ଘଣ୍ଟା ତାଙ୍କୁ ଯେପରି ବାନ୍ଧି ପାରୁ ନଥିଲା, ପ୍ରାଣ-ପ୍ରାଚୁର୍ଯ୍ୟରେ, ବିଷୟ ସମ୍ପତ୍ତିର ବୁଝାମଣା ତାଙ୍କୁ ସେପରି ବି ସ୍ୱାଦ ଲାଗୁଥିଲା । ସିଏ ଗୀତ ବାନ୍ଧି, ତରକାରି ରାନ୍ଧି, ପରିପୋଷି, ପାନଖାଇ, କୁଞ୍ଚା ପିନ୍ଧି, ଗୁଡ଼ଫୁଲାଇ ନିଜ ଜମିଦାରି ଛାଡ଼ିଲେ, ଗୁପାଖାନା ବୁଡ଼ାଇଲେ, ସିଏ ଘଡ଼ିଟିଏ କିଣିଲେ ବି ଅଣ୍ଟାରେ ମାରିଦେଉଥିଲେ । ଅବସ୍ଥିବ ଶୋଷରେ ପୁଣି ସେ ଅଣ୍ଟାରୁ ସବୁବେଳେ ଲୁଗା ଖସିପଡ଼େ···ଖୋସଣୀ ଫିଟିଯାଏ । ପ୍ରାଣରେ ଯାର ଫାଶ ନାହିଁ, ମନରେ ଯାର କୁଣ୍ଠ ନାହିଁ; ଅଣ୍ଟାରେ ତାର ଫାଶ ରହିବ କିଆଁ ?

ଏ ଥାରେ ଅଛି, 'ଗଣ୍ଠିଆ' ନହେଲେ ଟଙ୍କା ରହେ ନାହିଁ । ମାଇପେ ଆଗେ 'କାଣିଆ-କଣ୍ଠ'ରେ ଗଣ୍ଠି ପକାଇ, ଟଙ୍କା ଗୁଞ୍ଜୁଥିଲେ । ଏବେ କାନି-ପଣତରେ ଚାବି ଲେଞ୍ଜା ବାନ୍ଧୁଛନ୍ତି·····ଗୃହଲକ୍ଷ୍ମୀଙ୍କ ଭଣ୍ଡାର ସଙ୍କେତ । କ୍ରମୁଟିଏ ଫାଲିଟା ମାରନ୍ତି, ତେଣୁ ଅଣ୍ଟାରେ କମର ପଟି କସି ପଇସା ରଖନ୍ତି । ଆଗର ଗାଣ୍ଠିଆ, ବଟୁଆ କାମ ଏବେ ପକେଟ 'ପର୍ସ'ରେ ଯେତିକି ଚଳୁଛି, ପକେଟମାରୁଙ୍କ ସଂଖ୍ୟା ସେତିକି ବଢ଼ୁଛି । ପେଟା ମାରୁଆଡ଼ଏ ଫତୁଆ ଭିତରେ ପକେଟ କରି ନୋଟ୍ ଲୁଚାନ୍ତି । କେତେମାରହଟିଏ, ଦଣ୍ଡାତ ପଗଡ଼ି ଫେରରେ ନୋଟ ଗୁଞ୍ଜନ୍ତି ।

ପୁରୁଷଙ୍କ ପେଣ୍ଟଠାରୁ କୋଟପାଏ, ପଇସା ରଖିବାକୁ 'ପକେଟ', ଶାଢ଼ୀ-ପିନ୍ଧା ଲକ୍ଷ୍ମୀଙ୍କର 'ଭେନିଟି-ବେଗ' ଭିତରେ, ଟଙ୍କା ରଖିବା 'ପର୍ସ'। ମୂଳଆଣୀ ମାଇପିଙ୍କର କଞ୍ଚୁଳି ଭିତରେ କାଞ୍ଚନ।

କାଞ୍ଚନ-କୌଳିନ୍ୟର, ଏଇ ବାହନ ଓ ଭୂଷଣ ବ୍ୟବସ୍ଥା ଭିତରେ ପରସ୍ପର ଅବିଶ୍ୱାସର ଯେଉଁ ସ୍ୱାର୍ଥବୋଧୀ କ୍ଲାନ୍ତତା, ପରସ୍ପର ପ୍ରତିଦ୍ୱନ୍ଦ୍ୱିତାର ଯେଉଁ ଆତ୍ମ-ଘାତୀ କଦର୍ଯ୍ୟତା, ଜୀବିକାର ପ୍ରୟୋଜନରେ ଆମକୁ ଘଣାର ବଳଦ କରି ଚବିଶ-ଘଣ୍ଟା ଗଳଦ୍‌ଘର୍ମ କରୁଛି। ଜୀବନ-ଧର୍ମୀ ବ୍ରଜସୁନ୍ଦରଙ୍କ ଉଦାର ଆଭିଜାତ୍ୟ ଓ ନିର୍ବିଳମ୍ବୀ ମମତ୍ୱ ସେଥିରୁ ସ୍ୱତନ୍ତ୍ର। ଯିଏ ରଥତଳ ଚକ ଠେଲିବାରେ ବ୍ୟସ୍ତ, ତାଙ୍କୁ ରଥ ଉପର ଦିଅଁ-ଦର୍ଶନକୁ ବେଳ କାହିଁ? ବ୍ରଜସୁନ୍ଦରଙ୍କ ମନ୍ଥର-ଛନ୍ଦରେ, ଆତ୍ମ-କେନ୍ଦ୍ରିକତାର ତାଡ଼ନା ଯେପରି ନଥିଲା, ବିଷୟ-ବୁଦ୍ଧିର ପୀଡ଼ନ ମଧ୍ୟ ସେପରି ନଥିଲା।

ବ୍ରଜବାବୁ, ସମସାମୟିକ ଶ୍ରେଣୀ ପରିଚୟରେ 'ବରଜୁଆ' ବୋଲାଉଥିଲେ ବି ବ୍ୟକ୍ତିଗତ ସ୍ୱାତନ୍ତ୍ର୍ୟିକତାରେ, ସେକାଳର 'ସ୍ନବ'ଙ୍କ ସଙ୍ଗରେ ସେ ଅପାଂକ୍ତେୟ ଥିଲେ। 'ବଦଳନ୍ତି-ଦୁନିଆ'ର, 'ଚଳନ୍ତି-ଚଳି' ତଳେ ବ୍ରଜସୁନ୍ଦରଙ୍କ ସୌନ୍ଦର୍ଯ୍ୟ, ହୁଏତ ଆଜି ମ୍ଳାନ, ମାତ୍ର ଶାଶ୍ୱତ ମାନବିକତାର ଅକ୍ଷୟ ମାପକାଠିରେ ତାହା ମୂଲ୍ୟହୀନ ନୁହେଁ। 'ମେଟ୍ରିକ୍' ପଦ୍ଧତିରେ 'ଗଉଣି' ତଉଲ ଅଚଳ ହେଲେ ବି ଶୋକେଇଏ ସୋରିଷ ଭିତରୁ ପୁଞ୍ଜାଏ ବାଇଗଣ ବାଛିବା ଅଡ଼କ ନାହିଁ······ଅଡ଼କୁ ନାହିଁ।

ହିନେ, ସାମଗ୍ରୀର ଅଭାବରୁ ସନ୍ନ୍ୟାସ-ଧର୍ମ ଯେପରି ପ୍ରକୀର୍ତ୍ତିତ ଥିଲା, ସଞ୍ଚୟ ଓ ସମ୍ପତ୍ତିର ସନ୍ଧାନରେ, 'ପେଟ-କଟା-ବଣିକ'ର ସେହିପରି ପ୍ରଚଳନ ଥିଲା। ବ୍ରଜବାବୁଙ୍କ ପରି ଯାହାଙ୍କ ଅଣ୍ଟାରେ ଟଙ୍କା ଗୁଞ୍ଜିବାକୁ ଖୋସଣୀ ରହୁ ନଥିଲା, ତାଙ୍କର ପେଟକାଟିବାର ବଣିଆ ବୁଦ୍ଧି ଆସିବ କାହୁଁ।

ପେଟ-କଟା-ବଣିକର ପ୍ରବଚନଟି, ପେଟ ଓ ଅଣ୍ଟାର ଅଙ୍ଗାଙ୍ଗୀ ସମ୍ବନ୍ଧର ଏକ ଗଭୀର ଘୋଷଣା। ଏକ ଦିଗରେ, ପେଟକୁ ନ କାଟିଲେ ଯେପରି ଅଣ୍ଟାରେ ଧନ ରହିବ ନାହିଁ, ଅନ୍ୟଦିଗରେ, ଅଣ୍ଟା ନ ନୁଆଁଇଲେ, ପେଟ ପୂରିବ ନାହିଁ। ·· ·····"ପେଟରେ ଖାଇଲେ, ପିଠିରେ ବୁହେ, ଅଣ୍ଟାରେ ସହେ।" ସବୁରି ଆଗରେ ଅଣ୍ଟା ସଳଖ କରି ଛିଡ଼ା ହେବାକୁ ଚାହିଁଲେ, କବିଙ୍କ ଭାଷାରେ ପେଟକୁ ଶୁଖାଇ କୁମାର-

ଶାଳରେ ହାତୁଡ଼ି ପିଟିବ ପିନା, ପେଟକୁ ଫୁଲାଇ ଅଣ୍ଟାରେ ଗୁଣ୍ଡିବାକୁ ଧନ ମିଳିବ କାହୁଁ ? ନିଜ ଅଣ୍ଟା ଭାଙ୍ଗି ଯିଏ ଯେତେ ଉପରିସ୍ଥ 'ସଲାମ୍' ଠୁକି ପାରିବ, ଧନର ବଳରେ ସେ ତଳିଆଙ୍କ ଠାରୁ ସେତିକି 'ସଲାମ୍' ଗୋଟାଇ ପାରିବ । ଅଣ୍ଟା ଓ ପେଟର ଏ ବିପରୀତ ସମ୍ବନ୍ଧର ବ୍ୟତିକ୍ରମ ଥିଲେ ବ୍ରଜବାବୁ ।

ବ୍ରଜବାବୁଙ୍କ ମୁଣ୍ଡ ସଙ୍ଗେ ତାଙ୍କ ଅଣ୍ଟାର ଥିଲା ଗୋଟାଏ ଆପେକ୍ଷିକ ସମ୍ବନ୍ଧ । ଏଇ ଅଲକ୍ଷ୍ୟ ସମ୍ବନ୍ଧ, ତାଙ୍କୁ ତତ୍କାଳୀନ 'ହଜୁର-ମା-ବାପ' ଗୋରା ହାକିମଙ୍କ ନିକଟ ମୁଣ୍ଡ ନୁଆଁଇ ଦେଇ ନଥିଲା । ନିଜ ବୌଦ୍ଧିକ ଅଭିଜାତ୍ୟ ସହିତ ପର-ପ୍ରାଣତା, ତାଙ୍କୁ ସମସାମୟିକ ଶୋଷଣ-ତୋଷଣ-ବିଦ୍ୟା-ଅପାରଗ କରିଥିଲା । ସ୍ୱ-ଶ୍ରେଣୀସ୍ଥ ଅନ୍ୟାନ୍ୟ ବନ୍ଧୁ ଜମିଦାରଙ୍କ ପରି, ପ୍ରଜାଙ୍କୁ ଶୋଷଣ କରି, କର୍ତ୍ତାଙ୍କୁ ତୋଷଣ କରି, ନିଜର ବିଭବ ସଙ୍ଗେ ସରକାରୀ ଉପାଧି ଅର୍ଜନର ବିଦ୍ୟାରେ ବ୍ରଜବାବୁ ବିମୁଖ ଥିଲେ । ସେ ୰ମଧୁବାବୁଙ୍କ ପରି ସାହେବଙ୍କୁ ଯେପରି ବେଖାତିର କରୁଥିଲେ ୰ଗୋପବନ୍ଧୁଙ୍କ ପରି ପ୍ରତିବେଶୀଙ୍କ ଦୈନ୍ୟରେ ସେପରି ବିହ୍ୱଳିତ ହୋଇ ପଡ଼ୁଥିଲେ । ବ୍ରଜବାବୁଙ୍କଠାରେ, 'ମଧୁ-ଗୋପବନ୍ଧୁ'ଙ୍କ ଏକ ସରସ ସମାବେଶ ହିଁ ତାଙ୍କୁ ଶେଷଯାଏ ନିର୍ଧନ ଓ ନିରୁପାଧି କରି ରଖିଥିଲା ।

ଭୋଜନ ବ୍ୟବସ୍ଥାରେ ସ୍ୱାଦର ସନ୍ଧାନ ଯାହାଙ୍କ ସାଧନା ଥିଲା, ପୁଣି ନିଜେ ଖାଇବା ଆଗରୁ, ସ୍ୱପକ୍ୱ ସାମଗ୍ରୀକୁ ଅନ୍ୟର ରସନା ବିଚାରରେ ପରଖିବା, ଯାହାଙ୍କର ଥିଲା ସମ୍ଭୋଗ, ଓ ସେତିକି ପ୍ରଶଂସାରେ ଥିଲା ଯାହାଙ୍କ ଶ୍ରମର ଲାଳସା, ସେ ଯେ ପେଟ-କଥା ବଣିଜକୁ ଥିଲେ ସମ୍ପୂର୍ଣ୍ଣ ଅଯୋଗ୍ୟ, ଏ ସତ୍ୟ, ତାଙ୍କ ଆର୍ଥିକ ପରିସ୍ଥିତିରେ ପ୍ରତିଷ୍ଠିତ । ଦାତାର ଗର୍ବ ନରଖି, ଗ୍ରହୀତାର ସ୍ୱାଦ-ସେବାରେ, ଦାନର ଆନନ୍ଦ ଉପଭୋଗ ଥିଲା ବ୍ରଜବାବୁଙ୍କ ନିର୍ବାଣ ଧର୍ମ । ........"ଦାନୋପଭୋଗ ଶୂନ୍ୟେନ ଧନେନୋ ଧନିକଃ ଯଦି"............

ଆହାରରେ ବ୍ରଜବାବୁଙ୍କୁ ଦୁଧରେ ପାଣି ଯେପରି ଅସ୍ୱାଦ ଥିଲା, ବସ୍ତ୍ର-ଆହରଣରେ ଶରୀର-ଦୈନ୍ୟ ତାଙ୍କୁ ସେପରି ଅସୁହା ଥିଲା । ବହି ନ ପଢ଼ି ଜାଣିଲେ ବି, ଯିଏ କାଚ ଆଲମାରିରେ ଚକଚକିଆ ବହି ରଖି ବୈଠକ-ଖାନା ସଜାନ୍ତି, ଗାମୁଛାକୁ ଧୋବାଘରେ ପକାଇ ଯିଏ 'ସାଆନ୍ତ' ବୋଲାନ୍ତି, ବ୍ରଜବାବୁଙ୍କ 'ସାମନ୍ତ-ପଣିଆ' ଥିଲା ତାଙ୍କଠାରୁ ଅଲଗା ।

ସେ ଥିଲେ 'ରସକଲ୍ଲୋଳ' ପ୍ରଣେତା, ଦୀନକୃଷ୍ଣ ଦାସଙ୍କ, 'ଆରତ-ହରଣ ସାମନ୍ତ-ଭଜନ'ର ସାମନ୍ତ.—

"ଜଗବନ୍ଧୁ ପରି ଜଣେ ସାମନ୍ତ,
ନାହିଁ ନାହିଁତ
ଏମନ୍ତ ସାମନ୍ତ ତ୍ରିଭୁବନେ ନାହିଁ
ନାଶନେ ଆରତି-ଆରତ।"

ତାଙ୍କର ବଞ୍ଚସ୍ଥ ବୈରାଗ୍ୟରେ, ଥିଲ ଗୋଟାଏ ଚରିତ୍ର ସମ୍ପଦ ...କବାଟ କିଳି ଆପେ ପାରୁଶ ପକାଇ ଖାଇବାରେ ନୁହେଁ, ସମସ୍ତଙ୍କୁ ଡାକି ଲକ୍ଷ ହାତରେ ଖୁଆଇବାରେ। ଅନ୍ୟଙ୍କ ସଙ୍ଗେ ସମ୍ବନ୍ଧକୁ ବର୍ଜିତ କରିବାରେ ଯେଉଁ ବୈରାଗ୍ୟ, ସେଥିରେ ସ୍ୱାର୍ଥର ଦୁର୍ଗନ୍ଧ ଯେତିକି ବେଶୀ, ଅନ୍ୟଙ୍କ ସଙ୍ଗେ ସମ୍ବନ୍ଧକୁ ବ୍ୟାପକ କରିବାରେ ଯେଉଁ ବୈରାଗ୍ୟ, ସେଥିରେ ସମ୍ବେଦନର ସୁଗନ୍ଧ ସେତେ ଅଧିକ। ସମସାମୟିକ ପାଶ୍ଚାତ୍ୟ ଉଦାର-ନୈତିକ ଜାଗୃତ ସଙ୍ଗେ, ଉତ୍କଳୀୟ-ସଂସ୍କୃତିର ପ୍ରାଣ-କେନ୍ଦ୍ର, ପୈତୃକ ବରଜା-ପିଠକୁ ମିଳାଇ, ବ୍ରଜସୁନ୍ଦରଙ୍କ ଅନ୍ତର ଓ ବାହାରରେ, ଗୀତ ଓ ନୀତରେ, ଏକ 'ନୈଷଧିକ' ପରପ୍ରାଣ-ତାର ନୀରବ ଉତ୍ସ ଫୁଟି ଉଠିଥିଲା।"

...."ପ୍ରତିଦିନେ ଚଟକାକୁ ବଡ଼ମ୍ବଂ"............

.....ବ୍ରଜସୁନ୍ଦରଙ୍କ 'ଦାନ' ଯେତିକି ଗୋପନ, ସେତିକି ପ୍ରତ୍ୟାଶା-ବିହୀନ। ସେ ନିଜେ ବନ୍ଧୁ ଥିଲେ ସତ, ମାତ୍ର "ଯୋ ପଟେନ୍ ଆତ୍ମ କାରଣାତ୍.........ଗୀତା ଉକ୍ତ ସେ ପାପରେ 'ପାପଘ୍ନ' ନଥିଲେ।

ଏଣେ ଦିଅ ଦଣ୍ଡ଼ଏ, କଦଳୀ ପେଣାକେରେ, ପ୍ରଜା ତାର ଖଜଣା ପାଉଣା ସବୁ ଛାଡ଼ି ପାଉ ପଛକେ ନାଲିଶ କର; ହାକିମଙ୍କ ମେହେରବାନ 'ଉମେଦବାରୀ' ବ୍ରଜବାବୁଙ୍କୁ ଅସହ୍ୟ ଥିଲା। ସରକାରୀ ରାଜସ୍ୱ ଦେବାକୁ କରଜ କରନ୍ତୁ ପଛକେ, କଲଟର ପାଖରେ ଅଣ୍ଟା ଭାଙ୍ଗି, ଆଣ୍ଠୁ ଗୁଡ଼ିବାକୁ ସେ ଶିଖିନଥିଲେ। ଆଭିଜାତ୍ୟର ଏଇ ଆଦର୍ଶନୀୟ ଅହଂକାର ସଙ୍ଗେ ଲୌକିକ ବଦଳ-ବଦାନ୍ୟତା ତାଙ୍କୁ ଯେପରି ଏକଦିଗରେ ଆର୍ଥିକ ଅସହାୟତା ଆଣି ଦେଇଥିଲା, ଅନ୍ୟଦିଗରେ ତାଙ୍କର ଏଇ ବନ୍ତ-ବୈରାଗ୍ୟ, ତାଙ୍କର ସମସ୍ୟାମୟିକ ଅର୍ଥସେବା

ସମାଜରେ ତାଙ୍କୁ ସେତିକି ଅନନ୍ୟ କରିଥିଲା ।

ମଧୁବାବୁଙ୍କ, 'ଉତ୍କଳ-ଟେନେରି', ''ଓଡ଼ିଶା-ଆର୍ଟ-ଓ୍ୱାର' ପରି, ବ୍ରଜବାବୁ 'ମୁକୁର ପ୍ରେସ' ଲାଗି, କପିଳ କାରିଗରଙ୍କୁ ବସାଇ, ଦିନକୁ ଗୋଟିଏ ଅକ୍ଷର ଗଢ଼ାଇ ଓଡ଼ିଆଛପା ହରପକୁ ଯେଉଁ ସୁନ୍ଦର ରୂପ ଦେଇ ଯାଇଛନ୍ତି, ତାହା ଏ ପର୍ଯ୍ୟନ୍ତ ଅନ୍ୟ କୌଣସି ବ୍ୟବସାୟୀ 'ଟାଇପ ଫାଉଣ୍ଡ୍ରେରି'ରେ ସମ୍ଭବ ହୋଇନାହିଁ । ମୁକୁରପ୍ରେସ ଛପା, 'ପକେଟ ଗୀତାର' ମାଛମଞ୍ଜି ଅକ୍ଷର, ବ୍ରଜବାବୁଙ୍କ ଶିଳ୍ପ-କଳାର ଅମର ସ୍ୱାକ୍ଷର । ଯନ୍ତ୍ରରେ ଉତ୍ପନ୍ନର ପରିମାଣ ବଢ଼େ ସତ, ମାନବ ହାତ ନ ଲାଗିଲେ ଗୁଣ ଫୁଟେ ନାହିଁ । ମଧୁବାବୁ ପଟେ ଜୋତାର 'ଗଲନ୍ତି' ଲାଗି, ଥରେ ଟେନେରିଯାକ ଜୋତା ଯେପରି ଜଳାଇ ଦେଇଥିଲେ, ବ୍ରଜବାବୁ ସେହିପରି, ଗୋଟିଏ ଅକ୍ଷରର ବେଢ଼ଙ୍ଗ ଲାଗି ପୁରା ସେଟ୍‌କୁ ତଳାଇ ଦେଇଥିଲେ । ମୁକୁରପ୍ରେସ ବା ମାସିକ ମୁକୁର, ବଙ୍କାର ଗୃହଦ୍ୱାରରେ ଚଳୁନଥିଲା,—ଲାଭ ଲୋକସାନର ହିସାବ ରହୁନଥିଲା—ଥିଲା ବ୍ରଜବାବୁଙ୍କ ସାହିତ୍ୟ ସେବାର ଅନୁଷ୍ଠାନ ।

ରାଜାଙ୍କ ହାତୀପରି, ତାଙ୍କ 'ଚେଭ୍ରୋଲେଟ' ମଟରଗାଡ଼ି ଗ୍ୟାରେଜ ଭିତରେ ଅଚଳ ପଡ଼ି ରହୁଥିଲେବି, ଆଉ ଇଞ୍ଜିନର ଆଓ୍ୱାଜ ଥିଲା, ବ୍ରଜବାବୁଙ୍କ ବିରାଟତ୍ୱର ଘୋଷଣା । ସେ ଏକାଧାରରେ ଥିଲେ ସୁନ୍ଦର ତଥା ବିରାଟର ପୂଜାରୀ । ଶରୀରର ଶୋଭାରେ ସେ ଯେତିକି ଅଚଳ ଥିଲେ, ପ୍ରାଣର ପ୍ରାଚୁର୍ଯ୍ୟରେ ସେ ସେତିକି ସଚଳଥିଲେ—ଗତି ଓ ସ୍ଥିତିର ଏକ ଅପୂର୍ବ ସମନ୍ୱୟ ।

ଥରେ କଟକ କମିଶନରଙ୍କ କୋଠିରେ କଣ ଗୋଟିଏ କମିଟି ଥାଏ । ବ୍ରଜବାବୁ ସକାଳୁ ଉଠି, ପ୍ରାତକୃତ୍ୟ ସାରି, ପ୍ରାତରାସର ପାକ-ପ୍ରକ୍ରିୟାରେ ବ୍ୟସ୍ତ । ତେଣେ ଅନ୍ୟ କମିଟି ମେମ୍ବର ପହଞ୍ଚିବାରୁ କମିଶନରଙ୍କ ପି: ଏ: ଉମାଚରଣ ଦାସ ବ୍ରଜବାବୁଙ୍କୁ ଡାକି ନେବାଲାଗି ତପରାସୀ ଦଉଡ଼ାଇଲେ । ତରତରରେ ସିଂଗଡ଼ାଭିତରେ ଆ ୍ଞୁ ଙ୍କ ଗୁଣ୍ଡ, ରୁପା ପାନଡ଼ବାକୁ ପକେଟରେ ପୁରାଉ ପୁରାଉ, କୁଉଆ ଗୁଦର ସଙ୍ଗେ ପାଟକୁଟୁତା ଲ ଉପଟଉ କରି, ବ୍ରଜବାବୁ, କମିଶନରଙ୍କ କୋଠିରେ ପହଞ୍ଚିଲା ବେଳକୁ ଗୋରା ସାହେବ କମିଟି କାମରେ ବସିଯାଇଥାନ୍ତି ।

ବ୍ରଜବାବୁଙ୍କୁ ଦେଖି ସାହେବ ଥଟ୍ଟା କରି ପଚାରିଲେ:—

···"ଆପଣଙ୍କ ଘଣ୍ଟା କ'ଣ ଅଟକି ଯାଇଥିଲା କି ?

ଉତ୍ତରରେ ବ୍ରଜବାବୁ କହିଲେ:—

···"ଘଣ୍ଟା ଆପଣମାନେ ଗଢ଼ିଛନ୍ତି—ବିଦେଶ ଭିଆରି—ତେଣୁ ଘଣ୍ଟା ଆପଣମାନଙ୍କୁ ଚଲାଏ । ଆମ ସ୍ୱଦେଶୀ ଘଣ୍ଟା ହେଲେ, ଆମ ମାପ ମାଫିକେ ଚଳିବ । ····ଆମର ଆପଣଙ୍କର ଫରକ ସୂର୍ଯ୍ୟାସ୍ତ ସୂର୍ଯ୍ୟୋଦୟରେ ଆଠଘଣ୍ଟା ଫରକ"······

ଉକ୍ତ ସ୍ଥଳରେ ହାସ୍ୟରସିକ ୰ଗୋପାଳଚନ୍ଦ୍ର ପ୍ରହରାଜ, କମିଟିର ଅନ୍ୟତମ ସଭ୍ୟରୂପେ ଉପସ୍ଥିତ ଥିଲେ । ବ୍ରଜବାବୁଙ୍କ କାଳ-ନିର୍ଣ୍ଣୟ ଉପରେ ତାଙ୍କର ଟିପ୍ପଣୀ ହେଲା:—

······"ଘଣ୍ଟା ସେତେବେଳକୁ ତୁମ କଥାରେ ଚାଲିବ ।"······

ସେଇଦିନ ସନ୍ଧ୍ୟାକୁ ୰ଉମାବାବୁ ସାହେବଙ୍କ ତରଫରୁ ହାତ ଘଣ୍ଟାଟିଏ ଆଣି, ବ୍ରଜବାବୁଙ୍କୁ ଭେଟିଲାବେଳେ, ବ୍ରଜବାବୁଙ୍କ ବ୍ୟଂଗ ଆଜିର ଏ ଲେଖାର ପ୍ରଚ୍ଛେଦକ ।

······"ହଇହେ ଉମାଚରଣ ! ହାତରେ ତ ଦୁଇଥର ଗଣ୍ଠି ବାନ୍ଧିଛୁ, ଆଉ ଏ ଘଣ୍ଟାଟିକି ବାନ୍ଧିବ କେଉଁଠି ?

······"ସାହେବଙ୍କୁ କହିବ ତାଙ୍କ ହାତଘଣ୍ଟା, ମୋ ଅଣ୍ଟାରେ ରହିଲା;······

······ଗାନ୍ଧିଜୀଙ୍କ ଠାରୁ ହେଲେ ଏଇତକ ଶିଖେ ।······

·········"ତେବେ—ଏ ଘଣ୍ଟାଟିକୁ ନେଇ କଲେଜ ହତା, ଯୋଗେଶବାବୁଙ୍କ 'ସୂର୍ଯ୍ୟ-ଚକ୍ର' (ସୂର୍ଯ୍ୟ-ଯନ୍ତ୍ର) ସଙ୍ଗେ ମିଳାଇ ଆଣ ।······

······ସାହେବଙ୍କୁ କହିବ, ଆମ ୰'ସାଆନ୍ତ' (ପଠାଣି) ପଞ୍ଜି,

······"କାଠି ଖଣ୍ଡେ ଧରି ଗଣିଲା ନକ୍ଷତ୍ର, ହାରିଲା ବିଜ୍ଞାନ-ଶାସ୍ତ୍ର ।"······

ବ୍ରଜବାବୁଙ୍କ ସେଦିନରେ ସେଇ ଦମ୍ଭ, ଆଜିର ଆଗତ, ଅନାଗତରେ କେତେ ପ୍ରତିଷ୍ଠିତ ବା ପ୍ରତିଫଳିତ ହୋଇଛି, ସେ କଥା ଛାଡ଼ିଦେଲେବି, ବ୍ରଜବାବୁଙ୍କର ଜଣେ ସହୃଦୟୀ 'ସ୍ୱଦେଶ-ଗଠନ-ପ୍ରେମୀ' ଗଞ୍ଜାମବାସୀ ୰ଲକ୍ଷ୍ମୀନାରାୟଣ ପଟ୍ଟନାୟକଙ୍କ ପୁଅ, ବିଜୁବାବୁ ମୁଖ୍ୟମନ୍ତ୍ରୀ

ରୂପେ, "ପଶ୍ଚିମ-ଜର୍ମାନୀ-ମଡେଲ"ରେ ସୁନ୍ଦା-ପାରାଦ୍ୱୀପ ରାସ୍ତା ନିର୍ମାଣ, "ଇଟାଲିଏନ-ମଡେଲ"ରେ ଶ୍ରମିକ-ସହଯୋଗ-ସଂସ୍ଥା ସ୍ଥାପନ, "ଏମେରିକେନ-ମଡେଲ"ରେ କୃଷି ବିଦ୍ୟାଳୟ ପ୍ରତିଷ୍ଠା ପ୍ରଭୃତି, ଯେଉଁ ଉଦ୍ୟମ କରୁଛନ୍ତି, ତା ବିଜ୍ଞାନର ଦେଶ-କାଳ ଉଲ୍ଲଂଘନର ବିଜୟ-ବୈଜୟନ୍ତୀ । ଅନ୍ତରୀକ୍ଷ-ବିଜ୍ଞାନ ବିକାଶରେ, କଳିଙ୍ଗ (ଅନୁଷ୍ଠାନ) ପ୍ରଦତ୍ତ ପୁରସ୍କାର, ବିଜ୍ଞାନର ଏଇ ବିଜୟ-କେତନରେ, ଜଗନ୍ନାଥ-ପ୍ରେମୀ କୋଣାର୍କ-ଶିଳ୍ପୀଙ୍କ ଉତ୍ତରପୁରୁଷଙ୍କ ଉଜ୍ଜ୍ୱଳ ସ୍ୱାକ୍ଷର ।......"ଈଶା ବାସ୍ୟମିଦଂ ସର୍ବଂ ।"

ବ୍ରଜବାବୁଙ୍କ କୃତି ଓ କୀର୍ତ୍ତି କାହାଣୀରେ ଓଡ଼ିଶାକୁ ସ୍ୱତନ୍ତ୍ର ପ୍ରଦେଶ ରୂପେ ଗଠନ ପ୍ରୟାସକୁ ଛାଡ଼ ଦେଲେ, 'ରୋମ' ଇତିହାସରେ 'ବ୍ରୁଟସ'ଙ୍କୁ ଛାଡ଼ିଲାପରି ହେବ । [କ୍ଷମା କରିବେ, ରାମାୟଣର ଦେଶକେ ଉପମାଟି, ରୁଷର 'ଜ୍ୟୋତିର୍ଗମନ' ଓ 'ଅଣୁ-ବିସ୍ଫୋରଣ' ସମୟରେ, ଆମ କଟକରେ ବାର-ବର୍ଷିଆ ଭିତରେ ଲିଭିଯାଇ, ବିଶ୍ୱ-ବିଜ୍ଞାନର 'ରୋମ' ଅଧ୍ୟାୟଟିକୁ ଆଗକୁ ଠେଲିଦେଲା ।]

ରୋମ ନଗରୀର ଆହୁତ ଐଶ୍ୱର୍ଯ୍ୟରେ 'ବ୍ରୁଟସ'ଙ୍କ ସ୍ଥାନ, ସାମାଜିକ-ଚେତନାରେ ଦଳେ 'ଲୁଣ୍ଠନକାରୀ ଦସ୍ୟୁ'ଙ୍କ ଭିତରେ ।

କିଏ କହିବ, ଅନାଗତର ବିଗ୍ରହରେ, ଭାଷାଭିତ୍ତିରେ ପ୍ରଦେଶ ଗଠନର ଏଇ ଆଦ୍ୟସୁରୀଙ୍କୁ କେଉଁ ଆସ୍ଥାନ ମିଳିବ ? ସାହିତ୍ୟ ଓ ସଂସ୍କୃତିର ଯେଉଁ ପରଂପରାରେ, ମାତୃ-ଭାଷା ଓ ମାତୃଭୂମିର ମମତା, 'ଗରୀୟସୀ' ବୋଲି ଗଣ୍ୟ ହେଉଥିଲା, ଅନୁରୂପ ଷଠିଘର ବା ବିବାହର ସପ୍ତଧାରା, ଯେଉଁ ପୂର୍ବପୁରୁଷଙ୍କ ପିଣ୍ଡଦାନଠାରୁ ସଂପତ୍ତି ସତ୍ତ୍ୱଯାଏ, ପିତା-ପୁତ୍ର କର୍ତ୍ତବ୍ୟରେ ନିର୍ଦ୍ଦିଷ୍ଟ ଭିଟାମାଟିକୁ ଧରି ରଖିଥିଲା, ଆଜି ଆଇନରେ କନ୍ୟାର ସଂପତ୍ତି ଅଧିକାର ସୂତ୍ରରେ, ପୁଣି ବିବାହରେ ଜାତି-ଭେଦ-ଅମାନ୍ୟ ଓ ସ୍ୱାମୀ-ସ୍ତ୍ରୀ-ବିଚ୍ଛେଦ ବ୍ୟବସ୍ଥାରେ ତାହା ସ୍ଥାନାନ୍ତରିତ ।

ଏହା ସାଙ୍ଗକୁ ଭାରତ-ପାକିସ୍ଥାନର ରାଷ୍ଟ୍ରିକ ସୀମା ବଣ୍ଟନରେ, ବା ରାଉରକେଲା ହୀରାକୁଦ ପରି ଶାଳ୍ପିକ ତଥା ବୈଦ୍ୟୁତିକ ଯୋଜନାରେ ଯିଏ ପିତୃ-ପିତାମହଙ୍କ ନିର୍ଦ୍ଦିଷ୍ଟ ବାସଭୂମି ଛାଡ଼ିବାକୁ ବାଧ୍ୟ ହେଉଛନ୍ତି, ବା ଯିଏ କାରଖାନା-କାରିଗର ସଂବନ୍ଧରେ, ନିଜ ନିଜ ଜୀବିକାର ତଲାସରେ

ଜନ୍ମ-ଡ଼ିହ ଛାଡ଼ି 'ଦଣ୍ଡକାରଣ୍ୟ' ପରି 'ରିଫ୍ୟୁଜିକେମ୍ପରେ' ବା ଚଟକଲ, କାଳମାଟିର 'ଲେବର-କଲୋନିରେ' ନୂଆଘର ବାନ୍ଧୁଛନ୍ତି, ତାଙ୍କର ପୈତୃକ ଭାଷା ଓ ସଂସ୍କାର ଯେ କେତେକାଳ ରହିବ, କିଏ କହିବ ? ମେଦିନୀପୁରରେ ବଙ୍ଗଳାଭାଷା ପରି ସଡ଼େଇକଳାରେ ହିନ୍ଦିର ସଂକ୍ରମଣ, କେତେଦିନ ଅଟକାଇ ହେବ ? ସେହିପରି 'କାକିନାଡ଼ା' କୁଲିଏ, କଟକରେ ଓଡ଼ିଆ ନ କହି, କେତେଦିନ ଚଳିବେ ? ଓଡ଼ିଶୀ କୀର୍ତ୍ତନରେ ବଙ୍ଗଳାଭାଷାପରି, 'ଏଣ୍ଡୁରି' ଜାଗାରେ 'ଇଡ଼ିଲି'ର ସ୍ୱାଦ କେତେଦିନ ସଂଭାଳି ହେବ ? ପୁଣି କିଏ କହିବ, 'କୋଣାର୍କ' ଅନୁକରଣରେ ମାର୍କିନ-ରମଣୀ, ଅଣ୍ଟାରେ ଓଡ଼ିଶୀ 'ଚନ୍ଦ୍ରହାର' ପିନ୍ଧି, କ୍ଷୀଣ କଟି ଶୋଭା ନ ବଢ଼ାଇବେ ? ଏବେତ ସଂବଲପୁରୀ, ମାଣିଆବନ୍ଧ କୁମ୍ଭ-କଳଶ ଶାଢ଼ୀ, 'ପାରି' (Paris) ପ୍ୟାରିଙ୍କ ଫେସନ । ଯନ୍ତ୍ର-ସଭ୍ୟତାର ପ୍ରଚଣ୍ଡ ଗତିବେଗ, କୃଷି ସଭ୍ୟତାର ସ୍ଥିତି ଓ ଗତି, କୃଷ୍ଟି ଓ ସୃଷ୍ଟିକୁ ଓପାଡ଼ି ଫୋପାଡ଼ି ଦେଉଛି । ଶ୍ରେୟ ଓ ପ୍ରେୟର ଏ ସର୍ବଗ୍ରାସୀ ଦ୍ୱନ୍ଦ୍ୱରେ, କିଏ କହିବ କେଉଁଟା ମଙ୍ଗଳ ?

'ଉତ୍ତପନ୍ନ—ନଗରୀ'ର ନୂତନ ବାସିନ୍ଦାଏ ସ୍ୱଭାବରେ ଜାଜାବର, ସ୍ୱଧର୍ମରେ ସଂଯୋଗୀ । ରୁଷ-ବିପ୍ଳବରେ, 'ଜାର୍-ନିକୋଲାସ'ଙ୍କ 'ଡାଏରିରୁ' 'ଟ୍ରୋସ୍କି' ଅଭିଜାତ୍ୟର ଯେଉଁ ଔଦାସୀନ୍ୟ ପିଟାଇଛନ୍ତି, ତାର ପରିଣତି ହେଲା 'ଟଲଷ୍ଟୟ'ଙ୍କ ଶ୍ରମିକ-ଜୀବନର ପ୍ରଶଂସିତ ଦର୍ଶନ । 'ଟ୍ରୋସ୍କି'ଙ୍କ ମତରେ, ଉଦ୍‌ବିଗ୍ନ ଓ ଉତ୍ତେଜିତ ହେବାକୁ ଯେଉଁ-ମାନସିକ ଶକ୍ତି ଲୋଡ଼ା, 'ନିକୋଲାସ'ଙ୍କ ଆଧ୍ୟାତ୍ମିକ-ଦୈନ୍ୟରେ ତା ଅସମ୍ଭବ ଥିଲା । ଅପରପକ୍ଷରେ, 'ଟଲଷ୍ଟୟ'ଙ୍କ 'ମେହନତୀ'-ମନୁଷ୍ୟର ଅନନ୍ତ ବୈଚିତ୍ର୍ୟ, ତାର ପ୍ରୟୋଜନ ପୂରଣଲାଗି, ସମାଜ ଓ ପ୍ରକୃତି ସଙ୍ଗେ ନିରନ୍ତର ସଂଗ୍ରାମରେ ପ୍ରବୃତ୍ତ । ଉତ୍ପାଦନକାରୀର ଉପଭୋଗରେ ସ୍ୱାଧିକାରର ଗୋଟାଏ ସ୍ୱାଦ, ସୁଗନ୍ଧ ରହିଛି । ପରୋତ୍ପନ୍ନ-ଭୋଗୀଙ୍କ ଦାନ ବି, ଗ୍ରହୀତାର ଦୈନ୍ୟର ଏକକ ବିକଟ ପରିହାସ । ଅନୁପାର୍ଜ୍ଜିତ ବିତ୍ତରେ ଦାନର ଧର୍ମ, ସାମାଜିକ ପାପର ପ୍ରାୟଶ୍ଚିତ୍ତ ମାତ୍ର ।

ତେବେ 'କଣ ମାନବର ପ୍ରକୃତିରେ ପରସ୍ପର-ପ୍ରୀତି କାହିଁକି ଗୋଟାଏ ପ୍ରବଞ୍ଚନା ? ବିଜ୍ଞାନର ବିଜୟ-ଯାତ୍ରାରେ, ପ୍ରକୃତିର ସମସ୍ତ-ସମ୍ପଦ ଆଜି ମାନବର ଅକ୍ତିଆରରେ । ପ୍ରାଚୁର୍ଯ୍ୟର ଏଇ ପର୍ଯ୍ୟାପ୍ତିରେ,

ଧନୀ ଓ ଦରିଦ୍ରର ଜୀବନ-ଧାରଣରେ ଯେପରି ସମାନ ଅଧିକାର ଫୁଟିଛି, ସନ୍ନ୍ୟାସୀ ଓ ସଂଭୋଗୀଙ୍କ ସମାଜ-ସ୍ଥାନରେ ସେହିପରି ଭେଦାଭେଦ ଦିଶୁଛି । ଶ୍ରମିକର ସମାଜ-ପ୍ରୀତି,- ତାର ଉତ୍ପନ୍ନରେ, ପ୍ରତିବେଶୀର ଉପଭୋଗ-ଆନନ୍ଦ । ଦିନେ କୃଷକ ତାର ହଳ-ବଳଦ ଛଡ଼ାଇ, ଗଛତଳେ ଗୀତ ଗାଇ ଶୋଉଥିଲା ସତ, ମାତ୍ର ସେଥିରୁ ଯେଉଁ ସନ୍ତୁର-ବିବାଦ, ଉତ୍ପନ୍ନର-ଅପହରଣ ବାହାରି ପଡ଼ିଲା, ତା—"ସର୍ବେ ଭବନ୍ତୁ ସୁଖୀନଃ"—ମାନବର ଏଇ ମଙ୍ଗଳ କାମନାକୁ ରଖିଦେଲା ନାହିଁ । ଏବେ କାରଖାନାର ହୁଇସିଲ୍ ବାଜିଲେ, ଶ୍ରମିକେ ଦଉଡ଼ୁଛନ୍ତି ସତ, ମାତ୍ର ଯନ୍ତ୍ର ଚଳାଇବାରେ, ପରସ୍ପର-ନିର୍ଭର-ପ୍ରକ୍ରିୟାରେ, ଯେଉଁ ପରିବାର-ଧର୍ମ ଫୁଟୁଛି । ସେଥିରେ ଜାତିପତି ଭାଷାଭୂମି ବୁଡ଼ିଲେ ବି, ମାନବକତାର ସହଜ ସ୍ୱଭାବ ସ୍ପଷ୍ଟ । ଘରଛାଡ଼ି ବିଦେଶରେ, ପରିବାର କାମନାରେ ଶ୍ରମିକ ସୃଷ୍ଟିକରେ ତାର ଏକ ନୂତନ ସ୍ୱ-ଜନ, ସ୍ୱ-ଦେଶ । ଚଳମାନ ଦୁନିଆରେ, ବୁଦ୍ଧଦେବଙ୍କ "ଚରୈବେତି" ବାଣୀର ପୁନରୁଚ୍ଚାରଣ । ବେଦର ଅପୌରୁଷେୟ ଗାନଭିତରେ ଗାଭୀ, ଦୁଗ୍ଧ, କୃଷି ଓ ଶସ୍ୟର ବାସ୍ତବ, ସୁପ୍ରତ୍ୟକ୍ଷ ସମସ୍ୟା ସଙ୍ଗେ ଉଷାର ଶାନ୍ତ ସମାହିତ ତରଳ ସୌନ୍ଦର୍ଯ୍ୟର ଉପଲବ୍ଧିପରି କୃଷିସଭ୍ୟତାରୁ ଶିଳ୍ପ-ସଭ୍ୟତାକୁ ଉତ୍ତରଣ ଅଧ୍ୟାୟରେ, ବ୍ରଜସୁନ୍ଦରଙ୍କ ପ୍ରାତ୍ୟହିକ ତୈଳ, ତଣ୍ଡୁଳ ସାଧନ ସଙ୍ଗେ, ଥିଲା ଏକ ଅଲକ୍ଷ୍ୟ । ଅବାଙ୍ମାନସ ଗୋଚର ସତ୍ୟ-ଶିବ ସୁନ୍ଦରର ସନ୍ଧାନ ।

\+ + +

ବ୍ରଜବାବୁ କଣ ତାଙ୍କ ସମସାମୟିକ ଶିକ୍ଷିତ ଜମିଦାର-ଶ୍ରେଣୀଙ୍କ ଭିତରୁ ଜଣେ ନା, ତାଙ୍କର କିଛି ବୈଶିଷ୍ଟ୍ୟ ଥିଲା ?

ସେ କଣ ଇଂରେଜ ସରକାରଙ୍କ ସୌଜନ୍ୟ-ଲାଳଚ, ସାନୁଗତ, ସମ୍ମାନାଶ୍ରୟୀ, ସ୍ୱାର୍ଥାନ୍ୱେଷୀ, ସୌଖୀନ ଦେଶସେବକ ବା ବ୍ୟବସ୍ଥାପକ ଥିଲେ, ନା, ତାଙ୍କର ଗୋଟାଏ ସ୍ୱାଧୀନ ଦେଶାତ୍ମବୋଧ ଓ ଅକୃପଣ ପରାର୍ଥପରତା ଥିଲା ?

ସେହିପରି ତାଙ୍କର 'ମୁକୁର' ପ୍ରେସ ଓ ପତ୍ରିକା କଣ ତାଙ୍କର ଜମିଦାରିର ଅନୁପାର୍ଜିତ ଆୟ ସାଙ୍ଗକୁ, ଗୋଟାଏ ଅତିରିକ୍ତ ଅର୍ଜନର ସଂସ୍ଥା, ବା ବିତ୍ତ-ବାନଙ୍କ ସହଜ-ଜନ-ପ୍ରିୟତା-କାମନାର ଗୋଟାଏ

ଚୌତ୍ରିକ ଥିଲ ନା, ଏହା ତାଙ୍କରଅଳସ-ଅସୁଖ କାଳ ବିଳାସୀର ଗୋଟାଏ ବ୍ୟସନ ଥିଲା ?

ବ୍ରଜବାବୁଙ୍କ ବ୍ୟକ୍ତିଗତ ଜୀବନର ଘଟନାକୁ ଉଲ୍ଲେଖ କରି, ଉତ୍ତର ପୁରୁଷଙ୍କ ସମାଜ-ଚେତନାର, ଏ ଜିଜ୍ଞାସାକୁ ସମ୍ଭାଳି ହେଲେ ବି, ଶାନ୍ତ କରି ହେବନାହିଁ । ଆମର ପୂର୍ବତନଙ୍କ ସ୍ମୃତି ସନ୍ଦର୍ଭମାନଙ୍କରେ, ଏ ବିଡ଼ମ୍ବନା ବାରମ୍ବାର ପରିସ୍ଫୁଟ ହେଲେ ବି, ଜୀବନୀର ଆଲୋଚନାରେ ଆମକୁ ଏଇ ବୈଶ୍ଳେଷିକ-ବିଜ୍ଞାନ ପଇନ୍ଦୁ ନାହିଁ — ଅନ୍ୱେଷିକ ବୁଦ୍ଧି ଫୁଟୁନାହିଁ ।

ଫଳରେ ସିଏ ଯାହାଙ୍କୁ "ଜୀଅନ୍ତେ ନ ଦେଲେ ଭୁଞ୍ଜେ", ତାଙ୍କୁଇ ମଲାପରେ "ବେଣା ମୁଣ୍ଡରେ" ଅଙ୍କାଡ଼ି ଦେବାକୁ ଉଦ୍‌ବିଗ୍ନ । ସିଏ ଜୀଅନ୍ତରେ ଯେତିକି ଯାହାଙ୍କ କୁତ୍ସାକାମୀ ଥିଲେ, ମରଣାନ୍ତେ ନିଜ ପ୍ରାୟଶ୍ଚିତ୍ତରେ, ସିଏ ସେତିକି ତାଙ୍କ ପ୍ରଶଂସା ମୁଖର ହେଉଛନ୍ତି; ସମାଲୋଚନାର ଦିଗଦର୍ଶନ ନକରୁଛି, ବାହୁସ୍ଫୋଟ ମାରି ବାହାରି ପଡ଼ୁଛନ୍ତି । .........."ସହି ମୁଁ ପାରଇ ସବୁ ତୁମ୍ଭ ନିନ୍ଦା ବାଣୀ, ହେବେ ନ ସହିବ ମୋର ପଣ ଚକ୍ରପାଣି ।"

କୁରୁସଭାରେ ଅର୍ଜୁନଙ୍କ ଏ ପଣର କାରଣ କଣ ? ମହାଭାରତର ସେଇ ମହାସଭାରେ,"ଆସକ୍ତ ବାପ କାଃ" ନଥିଲେ କଣ, ଦ୍ରୌପଦୀଙ୍କ ବିବସନ ସଂଭବ ହୋଇଥାନ୍ତା ?

ଆଧ୍ୟାତ୍ମ ବିଗ୍ରହରେ ମୃତାତ୍ମା ମାନଙ୍କେ ଜୀବୀତଙ୍କ ସମ୍ମାନାର୍ହ । ଏଇ ଧାରାରେ ଚଣ୍ଡାଳ ହରିଶ୍ଚନ୍ଦ୍ର, ଶ୍ମଶାନର ଶିବ ରୂପେ ପ୍ରଖ୍ୟାତ ।

ତେବେ ବ୍ରଜବାବୁଙ୍କ ସଂପର୍କରେ ଉତ୍‌ଥାପିତ ପ୍ରଶ୍ନଗୁଡ଼ିକର ସୁସମ୍ବନ୍ଧ ସନ୍ଧାନ କରି ବସିଲେ, ଆଗେ ତାଙ୍କ ସମସାମୟିକ ଶ୍ରେଣୀ ବୈକଳ୍ପରୁ, ତାଙ୍କର ସ୍ୱକୀୟ ବୈଶିଷ୍ଟ୍ୟକୁ ଫିଟାଇ, ତାଙ୍କ ଅବଚେତନ ଆଚରଣରେ ତାଙ୍କ ଜୀବନ ଦର୍ଶନକୁ ପରଖିବାକୁ ହେବ । ଚେତସ ମାନବ ମାନେଇ ପ୍ରତାରକ ।

......"All Arowns in the Pharsee's hypocrisy"...

(Pasternik)

ତେଣୁ ବ୍ୟବହାରିକ ଜୀବନର ଦୈନନ୍ଦିନ ଅଭ୍ୟାସର, ଅଲକ୍ଷ୍ୟ ଅସାବଧାନ ଆଚରଣକୁ, ବ୍ରଜବାବୁଙ୍କ 'କାଳ' ଓ 'କଳା' ର କଷଟିରେ

ଚଳାଇ ଚଳିବାର ଏ ପ୍ରଚେଷ୍ଟା । ବଞ୍ଚିବାର୍ଦ୍ଧ ଶିଳ୍ପୀର ଶ୍ରେଷ୍ଠ 'କଳା' (Art of living) ସାହିତ୍ୟ ତାର ପ୍ରକାଶ ମାତ୍ର ।

"ମୃତ୍ୟୁ ଯେପରି ମହାକାଳର ଧ୍ୱଜା, ଜୀବନ ସେହିପରି କାଳାତୀତର ମନ୍ଦିର"—"ଯେ ନାହଂ ନାମୃତଂ ସ୍ୟାମ୍"..... ଜଗନ୍ନାଥଙ୍କ ବେଦୀରେ କାଳଭୈରବର ପୂଜା ।

ସାହିତ୍ୟ ହେଲା ନିତ୍ୟକାଳର ଅଦର୍ଶ-ବିଶ୍ୱାସୀ, ଖଣ୍ଡକାଳର ନୁହେଁ । ବ୍ରଜବାବୁଙ୍କ ଏଇ ବ୍ୟବହାରିକ ବାହ୍ୟବାସ ଅନ୍ତରାଳରେ, ଯେଉଁ ଅଗ୍ନିକ ଆତ୍ମାର ବଳିଷ୍ଠ ପୌରୁଷ ବର୍ତ୍ତିତ ଥିଲା, ତାର ପ୍ରଥମ ପ୍ରମାଣ ଯେ, ତାଙ୍କୁ ସରକାରୀ ଉପାଧି ବା ମନ୍ତ୍ରୀତ୍ୱ ଗ୍ରହଣ ଲାଗି ବାରମ୍ବାର ଅନୁରୋଧ କରି ଯାଇଥିଲେ ମଧ୍ୟ, ସେ ଅକୁଣ୍ଠ ଚିତ୍ତରେ ସମସ୍ତ ପ୍ରଲୋଭନକୁ ଅଗ୍ରାହ୍ୟ କରିଥିଲେ ।

ଦ୍ୱିତୀୟ ପ୍ରମାଣ, ଅନ୍ୟ ଜମିଦାରଙ୍କ ପରି ସେ ସରକାରୀ 'ଉଚ୍ଛେଦ-ଆଇନ' ଯାଏ ଅପେକ୍ଷା ନକରି, ମାଗଣା, ଗୃହସ୍ଥେ ବଖରାଏ ଲାଗି ବିବାଦ ନକରି, ଗଛଟାଏ, ମାଛଟାଏ ଲାଗି ମିଛ ସତ ନକହି, କ୍ଷତି ପୂରଣରେ ହଜାରେ ପାଞ୍ଚହଜାର ଲାଗି କ୍ଷମତାଧରଙ୍କ ପଦଲେହନ ବା ଅଯଥା ସ୍ତୁତିଗାନ ନକରି, ନିଜ ସୁନାଥାଳୀ ଜମିଦାରୀକୁ, ବିଷୟ୍-ବିଷର ଜଞ୍ଜାଳ ମଣି, ନିଜ ଅପାରଗତା ଅଙ୍ଗୀକାର କରି, "କୋର୍ଟ ଅଫ ଓ୍ୱାର୍ଡ" ଆଇନରେ ଆଗରୁ ସରକାରଙ୍କ ଜିମା ଛାଡ଼ି ଦେଇଥିଲେ ।

ବ୍ରଜବାବୁଙ୍କ ହୃଦୟ ଜାହ୍ନବୀ, କେବଳ ବେଗବତୀ ଗଙ୍ଗା ନୁହେଁ, ଶିବ ଜଟାଚ୍ୟୁତା ଅଳକାନନ୍ଦା ମଧ୍ୟ ।

ବ୍ୟବସ୍ଥାପକ ରୂପେ, ବ୍ରଜବାବୁଙ୍କ ବୁଦ୍ଧି ଯେ କେବଳ ତୀକ୍ଷ୍ଣ ଥିଲା, ସେତିକି ନୁହେଁ, ସରକାରୀ ସମସ୍ତ କାଗଜକୁ ଅତ୍ୟନ୍ତ ଅଧ୍ୟବସାୟର ସହିତ ଅନୁଶୀଳନ କରି, ସେ ସୂକ୍ଷ୍ମାତିସୂକ୍ଷ୍ମ ବିଚାରର ପାରଙ୍ଗମ ଥିଲେ ।

ବକ୍ତାରୂପେ ତାଙ୍କର ଭାଷା, ଭାବ ଓ ବ୍ୟଞ୍ଜନାରେ ଲୋକ-କଲ୍ୟାଣ-କାମନାର ଗୋଟାଏ ସ୍ୱାଧୀନ ଆନ୍ତରିକ ଆବେଗ ଉଚ୍ଛୁଳି ଉଠୁଥିଲା । ସମଗ୍ର ଦୃଷ୍ଟିରୁ, ବ୍ରଜବାବୁ ଥିଲେ କ୍ଷୀଣାୟୁମାନ ମଧ୍ୟ-ବିତ୍ତ ସମାଜର ଦେଶ ହିତୈଷୀ ଓ ସାହିତ୍ୟ, ସଙ୍ଗୀତ, ଶିଳ୍ପକଳାର ତଥା ସୁକୁମାର ରୁଚି ଓ ପ୍ରଚେତ ପରିପୂର୍ଣତାର, ପ୍ରତୀକ, ଧାରକ ଓ ବାହକ ।

ଟଙ୍କା ସଙ୍ଗେ ଯେଉଁଠି କୁଡଙ୍ଗର ଖ୍ୟାତି, ବଡ଼ଲୋକତାର ମାପ ଯେଉଁଠି ବ୍ୟାଙ୍କ ବେଲେନ୍‌ସ୍‌ରେ, ସେଠି ବ୍ରଜବାବୁଙ୍କ ପରି ହୁଗୁଳା, ଫାଙ୍ଗୁଳା, ଉଡ଼ାଣିଆ, ପର-ବିଶ୍ୱାସୀ, ମାନୀ, ମଜଲି, ଲୋକତ ଅଯୋଗ୍ୟ ହେବାର କଥା । ଧନୀଙ୍କର ଟଙ୍କାର ଜୋର ପ୍ରକାଶ୍ୟରେ ଯେତେ ଧିକ୍କୃତ, ଅପ୍ରକାଶ୍ୟରେ ସେତିକି ଆଦୃତ । ଟଙ୍କାରେ ଅନ୍ୟକୁ କିଣିଲେ ଶକ୍ତିର ପ୍ରକାଶ ହୁଏ । ମାତ୍ର ଟଙ୍କାକୁ ଅନ୍ୟଙ୍କ ଲାଗି ଉତ୍ସର୍ଗ କଲେ, ପ୍ରୀତିର ପ୍ରକାଶ ପାଏ ।

ଯିଏ ଲକ୍ଷପତି, କୋଟିପତିଙ୍କ ଜୀବନୀ ଲେଖିବାରେ ସିଦ୍ଧ, ତାଙ୍କୁ ଦେବାଳିଆ, କରଜିଆ ଜୀବନ ଲେଖିବାକୁ କହିଲେ, ସେ ବେକ ବଙ୍କେଇ, ହେଣ୍ଡନୋଟ ଦେଖିବେ ସିନା; ପଣାପାଲି, ପୁଞ୍ଜିକୋଥଳୀ ଦେଖିବ କିଆଁ ? କେତେକୁ ଗହଣାଖଣ୍ଡେ କି "ସେଆର"ଖଣ୍ଡେ; ନପାଇଲେ କହିବେ – ଯାର ପଇସାକର ପଡ଼େ ନଥିଲା, ତାର ପୁଣି ଜୀବନୀ କାହିଁକି ?

—*—

# ଚିରସ୍ମରଣୀୟ ମନସ୍ୱୀନେତା ଶ୍ରୀ ବ୍ରଜସୁନ୍ଦର

## ଶ୍ରୀମତୀ ସରଳା ଦେବୀ

୧୯୪୪ ସାଲ ଜୁନ ୧୦ ତାରିଖ ଦିନ ଶର ସ୍ମରଣୀୟ ଶ୍ରୀ ବ୍ରଜସୁନ୍ଦର ଦାସ ମହାଶୟଙ୍କର ମୃତ୍ୟୁ ଖବର ଦେଶବାସୀ ପାଇଥିଲେ । ସମସ୍ତେ ସଂସାର ଧର୍ମଶାଳାରେ ଦିନ କଟାଇ ଚାଲିଯାନ୍ତି । ସେ ତାଙ୍କର କର୍ମ ବିପାକ ଭୋଗି ଚାଲିଗଲେ । ଏହା ସଂସାରର ସ୍ୱାଭାବିକ ନିୟମ । କିନ୍ତୁ ବିଶିଷ୍ଟ ବ୍ୟକ୍ତିମାନେ କ୍ୱଚିତ ଗୋଟିଏ ଧାରାରେ ଜନ୍ମ ହୋଇଥାନ୍ତି । ସେମାନେ ଚାଲିଗଲେ, ସହଜରେ ଓ ସମ୍ଭବରେ ତାଙ୍କ ସ୍ଥାନ ପୂରଣ ହୁଏନାହିଁ । ଧନସମ୍ପତ୍ତି ଉତ୍ତରାଧିକାରରେ ପୁତ୍ର, ପରିବାର ପାନ୍ତି ସିନା, କିନ୍ତୁ ଉତ୍ତରାଧିକାରୀ, ପିତାର ପ୍ରତୀକ ରୂପ ପାଏ ନାହିଁ । ବରଂ ତାର ବ୍ୟତିକ୍ରମ ଘଟିଥାଏ ।

ସମାଜରେ ନେତାଙ୍କର ପୁତ୍ରମାନେ ଯେଉଁପରି ବିବର୍ତ୍ତିତ ହୁଅନ୍ତି, ବ୍ରଜସୁନ୍ଦର ବାବୁଙ୍କଠି ତାର ବ୍ୟତିକ୍ରମ ସମସ୍ତେ ଲକ୍ଷ୍ୟ କରିଥିଲେ ତାଙ୍କର ତରୁଣ କାଳରୁ । ସେ କାଳରେ ବି.ଏ. ପାଶ୍‌କଲା ଯୁବକର ବେକାରି ନଥିଲା ଆମ ଦେଶରେ । ଦିପୋଟି ଚାକିରି ସେ କାଳରେ

ଗ୍ରାଜୁଏଟ୍‌ଙ୍କ ପାଇଁ ଇଂରାଜ ଟାଣ୍ଡା ଘରେ ଯାଉଥା ରହୁଥିଲା । ଧନୀ ଜମି-ଦାର ପୁଅ ବ୍ରଜବାବୁ ବି.ଏ. ପାସ୍ କରିଥିଲେ, କିନ୍ତୁ ସେ ନିଜକୁ ପଦପଦବି ତଳେ ରଖି ପରମଣ୍ଡଳିରେ ନିଜର ବିବେକ ବୁଦ୍ଧି ଓ ବିଗ୍ରହକୁ ନିୟନ୍ତ୍ରିତ କରିବାକୁ ଇଚ୍ଛା କରି ନଥିଲେ । ସେ ଚାହୁଁଥିଲେ ଓଡ଼ିଶାରେ ଗୋଟିଏ ସାର୍ଥକ ଜୀବନର ଆଦର୍ଶ ଦେଖାଇବେ । ଯେଉଁ ପରିସ୍ଥିତିରେ ରହିବେ, ତହିଁରେ ନିଜକୁ ବିଶୁଦ୍ଧ କରି ରଖିବେ । ଦେଶର ସାହିତ୍ୟକୁ ନବରୂପାୟନ ଦେବେ । ଦେଶରେ ଅଗ୍ରଗାମୀ ଚିନ୍ତାଧାରା ସୃଷ୍ଟି କରିବେ । ପ୍ରାଚୀନ ସାହିତ୍ୟ ଓ ସଂଗୀତକୁ ଉଦ୍ଧାର କରିବେ, ଛିନ୍ନଭିନ୍ନ ଓଡ଼ିଶା ଦେଶ ମାଟି ଇଂରାଜର କୂଟଚକ୍ରରୁ ଟାଣି ଆଣି ଓଡ଼ିଆ ଜାତିକୁ ଏକ ଶାସନାଧୀନରେ ରଖାଇ ପୂର୍ଣ୍ଣାଙ୍ଗ ସ୍ୱତନ୍ତ୍ର ପ୍ରଦେଶ ସୃଷ୍ଟି କରିବେ । ସେ ନିଜେ ସାହିତ୍ୟିକ ଥିଲେ, ଇଂରାଜୀ ଖବରକାଗଜ ଓ ମୁକୁର ପତ୍ରିକାର ସମ୍ପାଦକ ଥିଲେ । ସଂଗୀତରେ ତାଙ୍କର ଅତି ଆଗ୍ରହ ଥିଲା ଏବଂ ସେ ତବଲା ବାଦ୍ୟକାର ଥିଲେ । ଶ୍ରୀ ଗୋକୁଳ ଶ୍ରୀ ଚନ୍ଦନଙ୍କୁ ଅଣାଇ ଗୀତ ସଭା ଘରେ ବସାଉଥିଲେ । ସେ ସଂଗୀତରେ ତାଳ ସଙ୍ଗତ କରୁଥିଲେ । ବିଦଗ୍ଧ ଚିନ୍ତାମଣି ତାଙ୍କର ପ୍ରିୟ ପାଠ୍ୟ ଥିଲା ।

ମହାମାନ ବ୍ରଜସୁନ୍ଦର ବାବୁ ମାନବର ଦୁଃଖ ମୋଚନକୁ ନିଜର ବ୍ରତ କରିଥିଲେ । ରୋଗି, ଭୋକି, ପ୍ରଜାପାଠକ, ଗୁଣି ସବୁ ଶ୍ରେଣୀର ଲୋକଙ୍କୁ ଭୋଜନ, ଅର୍ଥ ଦାନଦ୍ୱାରା ସାହାଯ୍ୟ କରୁଥିଲେ । ସେ ଏପରି ଆତିଥ୍ୟପରାୟଣ ଥିଲେ ଯେ, ତାଙ୍କ ଘରକୁ ଯାଇ କେହି ଖାଲିପେଟରେ ଫେରୁ ନଥିଲେ । ବ୍ରଜସୁନ୍ଦର ବାବୁ ବହୁତ ପାନ ଖାଉଥିଲେ ଓ ସମସ୍ତଙ୍କୁ ପାନ ଦେଉଥିଲେ ।

ସେ ନିରାମିଷାଶୀ ଥିଲେ ମଧ୍ୟ ମାଛ, ମାଂସ ଓ ଅନ୍ୟ ତରକାରି ରାନ୍ଧି ଡାକହାକ ମଣିଷଙ୍କୁ ଟାଣି ଧରି ତାଙ୍କ ରନ୍ଧାର ନିନ୍ଦା ପ୍ରଶଂସା ଶୁଣିବା ପାଇଁ ଖୋଉଥିଲେ । ସେ ନିତି ପ୍ରାୟ ଦୁଇ ବେଳା ପରିବା କଟା ଓ ରନ୍ଧା କାମ କରୁଥିଲେ । ଗୃହକର ପୁଷ୍ପିତ ଫଳି ଫଳେ ରହି ଏ ଦୃଶ୍ୟ କାବା ପାଲଟି ଦେଖୁଥିଲେ । ପାନ ଖାଇବା ଓ ରାନ୍ଧିବା ଖୋଇବା ତାଙ୍କର ନିଶାଥିଲା । ନିଜେ ମଧ୍ୟ ଭଲ ଜିନିଷ ଖାଉଥିଲେ । କିନ୍ତୁ ଅଟକଳା ନଥିଲେ । ନିମନ୍ତ୍ରଣ ରଖୁଥିଲେ; କିନ୍ତୁ କେଉଁଠି ଖାଉ ନଥିଲେ ।

ସଂଯତ ଅଭ୍ୟାସ ରଖୁଥିଲେ ଆହାର ବିହାରରେ । ସେ ତାଙ୍କ ପିଲମାନଙ୍କର ନିତ ସାବୁନଲଗା, ବାସନା ତେଲ ଲଗା, ସ୍ନୋ ପାଉଡର ଲଗା ଦେଖୁଥିଲେ ନଦେଖିଲା ପରି । ନିଜେ ବିଳାସ ବ୍ୟସନ କରୁନଥିଲେ ।

କିନ୍ତୁ ନିଜେ ବଡ଼ସକାଳୁ ସୋରିଷ ତେଲ ବୋଳିହୋଇ କାକସ୍ନାନ କରୁଥିଲେ । କେବେହେଲେ କୃତ୍ରିମ ପେଷ୍ଟ ଓ ବ୍ରସ୍ ବ୍ୟବହାର ନକରି ଗୁଡ଼ାଖୁ ଦାନ୍ତକାଠି କେବଳ ବ୍ୟବହାର କରୁଥିଲେ । କେବେ ଚାକର ବାକରଙ୍କ ଦ୍ୱାରା ତେଲ ମର୍ଦ୍ଦନ ବା ଗୋଡ଼-ଦବା କାମ କରାଉ ନଥିଲେ । ସ୍ନାନ ବେଳେ ନିଜେ ଗାମୁଛାରେ କେବେ ଘଷିହେଉ ନଥିଲେ । ପାଣିଡାଳି ପୋଛି ହୋଇ ଚାଲି ଆସୁଥିଲେ । ସକାଳୁ ଚା ଜଳଖିଆ ଖାଇବା କେବେ ତାଙ୍କ ଜୀବନରେ ଦେଖିନାହିଁ । ଦିନରେ ଥରେ, ସନ୍ଧ୍ୟାବେଳେ ବା ରାତିରେ ଥରେ, ଦୁଇଥର ମାତ୍ର ଖାଉଥିଲେ । ଲୁଗା ତାଙ୍କର କେବେ କୁଞ୍ଚ ହେଉ ନଥିଲା । ଧୋବ ହେଉ, ଅସଫା ହେଉ, ଅଲ୍ଗୁଣିରୁ ଲୁଗା ଟାଣିନେଇ ଗାମୁଛା ବଦଳି ପିନ୍ଧୁଥିଲେ । କେବେ ସଙ୍ଗା ସଜ ହୋଇ ରହିବାକୁ ବା ସୌଖୀନ ଜୀବନ ବିତେଇବାକୁ, ଲୋକଙ୍କ ଆଖିରେ ଧନୀବୋଲି ପରିଚିତ ହେବାକୁ ଇଚ୍ଛା କରୁନଥିଲେ । ଘରେ ହୀରା, ନୀଳା ମୁଦି ରହିଥିଲେ ମଧ୍ୟ ସୁନାର ଘଡ଼ି ଚେନ୍ ରିଷ୍ଟୱାଚ ପଡ଼ିଥିଲେ ମଧ୍ୟ ତାଙ୍କ ଜୀବନ ଭିତରେ ସୁନାର ମୁଦିଟିଏ ଲଗାଇବାର କେହି ଦେଖୁନଥିଲା ।

ପିଲଙ୍କୁ ଓ ତରୁଣ ତରୁଣୀ ବୟସର ଲୋକ ଦେଖିଲେ ତାଙ୍କ ପ୍ରାଣ ବାତ୍ସଲ୍ୟ ରସରେ ବୁଡ଼ି ଯାଉଥିଲା । ସମସ୍ତଙ୍କଠି ଭଲ ଗୁଣ ଦେଖିବା, ସମସ୍ତଙ୍କୁ ମିଠା କଥା କହିବା, ଆଦର କରିବା ଓ ତାଙ୍କ ଗୁରୁଜନମାନଙ୍କ ପାଖେ ବିନୀତଭାବରେ କଥା କହିବା ସ୍ୱଭାବ ଧର୍ମ ଥିଲା । ଅତି ଦୁରାଚାରୀ, ଠକ, ଚୋର, ହିଂସ୍ରକ, ଈର୍ଷାଳୁ ଲୋକମାନଙ୍କୁ ମଧ୍ୟ ନମ୍ର ଓ ସ୍ନେହ ମିଶା କଥା କହୁଥିଲେ । ପଛରେ କେବେହେଲେ କାହାରି ନିନ୍ଦା କରି କହୁନଥିଲେ । ଯାହାକୁ ଯାହା ପରାମର୍ଶ ଦେଉଥିଲେ ବା କହୁଥିଲେ, ସେହି ଲୋକଙ୍କୁ ଡାକି ମୃଦୁ କଣ୍ଠରେ ପରାମର୍ଶ ଦେଉଥିଲେ । ଉପଦେଶ କାହାକୁ କେବେ ଦେଉ ନଥିଲେ । ନିଜେ ଶ୍ରୋତା ହୁଅନ୍ତି ମାତ୍ର ସଂଦର୍ଶାତ୍ମକ

ବିଷୟର ବକ୍ତା ନୁଅନ୍ତି ନାହିଁ । କାହାକୁ ଦୁଃଖ ଦବା, କାହା ମନକୁ ବାଧିଲା ଭଳି କଥା କହୁ ନଥିଲେ ।

ତାଙ୍କୁ ପିଲଦିନେ ଭଗାରୀମାନେ ସମ୍ପତ୍ତି ଖାଇବେ ବୋଲି ବିଷ ଦେଇଥିଲେ । ମାତ୍ର ତାଙ୍କର କିଛି ଅନିଷ୍ଟ ହେଲା ନାହିଁ । କାହାପ୍ରତି ପ୍ରତିଶୋଧ ନେବା ତାଙ୍କର ନୀତି ବିରୁଦ୍ଧ ଥିବାରୁ ସେ ତାଙ୍କ ଭଗାରୀ-ମାନଙ୍କୁ ସୁଦ୍ଧା କ୍ଷମା କରିଥିଲେ । ନରମା ଓ ନିରୀହ ପ୍ରକୃତିର ଲୋକ ଥିବାରୁ ଜମିଦାରୀ ବୁଝୁ ନଥିଲେ । ପ୍ରଜାଙ୍କର ଖାତିର ଥିଲା । ମାତ୍ର ତାଙ୍କପ୍ରତି ଜମାରୁ ଡର ଭୟ ନଥିବାରୁ ସେମାନେ ତାଙ୍କୁ ଖଜଣା ଦେଉନଥିଲେ । ତାଙ୍କର ନାଏବ ଜମିଦାର ଥିଲେ !! ଓ ବ୍ରଜସୁନ୍ଦର ବାବୁ ଏଥିପାଇଁ ଜମି ନିଲାମରୁ ପ୍ରଜାଙ୍କୁ ଓ ତାଙ୍କ ସମ୍ପତ୍ତି ରଖିବା ପାଇଁ ସରକାରଙ୍କୁ ହଜାର ହଜାର ଟଙ୍କା ପ୍ରତି କିସ୍ତିରେ ଖଜଣା ଦେଉଥିଲେ । ବନ୍ଦୋବସ୍ତବେଳେ ତାଙ୍କର ପ୍ରଜାମାନେ ଜମିସବୁ ଆତ୍ମସାତ୍ କଲେ । ଶହ ଶହ ଏକର ଜମି ପ୍ରଜାଏ ନିଜ ନାଁରେ ଲେଖାଇ ନେଲେ । ସେ ଖବର ପାଇଲେ, ମାତ୍ର ଜମିଦାର ବ୍ରଜସୁନ୍ଦର ବାବୁ ତିଳେ ବିଚଳିତ କି ଚଞ୍ଚଳ ହେଲେ ନାହିଁ । ସେଇ ହସ, ସେଇ ପାନଖିଆ, ସେଇ ପିଠି ପେଟ ଆଉଁସିବା ଅଭ୍ୟାସ ରହିଗଲା । ପ୍ରଜାଙ୍କ ବିରୁଦ୍ଧରେ ଅପିଲ କି ମକଦ୍ଦମା କଲେ ନାହିଁ । ତାଙ୍କର ଦଖଲ ଜମି ବିନା ଜରସମନରେ ପ୍ରଜାଙ୍କର ହେଲା । ଦାଖଲ ଖାରଜ ରେସମ ମଧ୍ୟ ପ୍ରଜାଙ୍କଠୁଁ ଆଦାୟ କରୁନଥିଲେ । ଖବର ମଧ୍ୟ ରଖୁ ନଥିଲେ । ସବୁ ତହସିଲଦାର କରନ୍ତି । ନିଅନ୍ତି, ଦିଅନ୍ତି, ଖାଆନ୍ତି । ଯେତିକି ଧର୍ମହେଲା ସେମାନେ ହାତ ଟେକି ଦେଉଥିଲେ । ସେତିକି ସେ ନେଉଥିଲେ । ଏ ବିଷୟରେ ଟିକିଏ ଉତ୍ୟକ୍ତ କରିବା ପାଇଁ ତାଙ୍କୁ କହିଲେ ବି ସେ ହସୁଥିଲେ । ଅନ୍ୟ କଥା କହୁଥିଲେ । ଏ କଥା ଗୁଡ଼ାକ ଏ କାନରେ ପଶି ସେ କାନରେ ବାହାରି ଯାଉଥିଲା । ଯେ ଯାହା ମାଗୁଥିଲା, ତାକୁ ତାହା ସାଧ୍ୟମତେ ଦେଉଥିଲେ ।

ଧନୀଲୋକେ ସାଧାରଣତଃ କୃପଣ ଓ ମତ୍ସର ହୁଅନ୍ତି । କିନ୍ତୁ କିଏ ଟଙ୍କା କୋଠାବାଡ଼ି କି ବେପାର କରି ଧନୀ ହୋଇଯିବା ଖବର ପାଇଲେ ତାଙ୍କ ମନରେ ଈର୍ଷା ଭାବ ଆସୁନଥିଲା । କାହାରି କୃତିତ୍ୱ କଥା ଶୁଣିଲେ ସେ ଖୁବ୍ ଖୁସି ହେଉଥିଲେ । ଓଡ଼ିଆ ଯୁବକମାନଙ୍କର କୃତିତ୍ୱ ଶୁଣିଲେ

ଖୁସି ହେଉଥିଲେ । ତାଙ୍କର ଆଦର୍ଶ ହେଲା, କାହାକୁ କଡ଼ା କଥା ନକହି ସମସ୍ତଙ୍କୁ ଆଦର ସ୍ନେହ କରିବା ଓ ଉତ୍ସାହିତ କରିବା । ସେ ଯେପରି ଭଲ କୌଶଳୀ ଶାସକ ମନ ପାଇଥିଲେ ଓ କୂଟନୀତିରେ ପାରଙ୍ଗମ ଥିଲେ, ସେ କାଳରେ ମନ୍ତ୍ରୀ ହୋଇ ପାରିଥାନ୍ତେ । ମାତ୍ର ସେ କାହାକୁ ତାଙ୍କ ନିଜ ପାଇଁ ଖୁସାମତ୍ କରିବାକୁ କେବେ ଇଚ୍ଛା କରୁନଥିଲେ । ସାର୍ଟିଫିକେଟ ମଧ୍ୟ କାହାକୁ ଅନୁରୋଧରେ ପଡ଼ି ଦେଉ ନଥିଲେ । ନିଜେ ଯାହାକୁ ଚିହ୍ନନ୍ତି ନାହିଁ, ତାକୁ ସାର୍ଟିଫିକେଟ ଦେବା ତାଙ୍କ ନୀତି ବିରୁଦ୍ଧ ଥିଲା । ସେ କେବେହେଲେ କାହାରି ଅନିଷ୍ଟ କରୁ ନଥିଲେ । ତାଙ୍କୁ ଧପାଇ ବହୁଲୋକ ତାଙ୍କଠୁଁ ଟଙ୍କା ନିଅନ୍ତି । କିନ୍ତୁ ତାଙ୍କୁ ଠକିଦେଇ ଟଙ୍କା ନେଇଥିବା ଲୋକ ବିରୁଦ୍ଧରେ କିଛି କାର୍ଯ୍ୟ କରିବା ଦୂରେ ଥାଉ, କାହାକୁ ଠକର ନାମ ମଧ୍ୟ କହନ୍ତି ନାହିଁ । ସେ ଅତିଶୟ ହୃଦୟବାନ, ଉଦାରମନା, ସ୍ନେହଶୀଳ ବ୍ୟକ୍ତି ଥିଲେ । ସେ ଦେଶ ମିଶ୍ରଣର ଜଣେ ନେତା ଥିଲେ । ଏବଂ ନେତା ଗୋପବନ୍ଧୁ ଦାସଙ୍କର ସହକର୍ମୀ ଥିଲେ । ମଧୁବାବୁଙ୍କୁ ସେ ମାନୁଥିଲେ । ସେମାନଙ୍କ ପରାମର୍ଶରେ ମଧ୍ୟ କାର୍ଯ୍ୟ କରୁଥିଲେ । ଓଡ଼ିଆ ମିଶ୍ରଣ କମିଟି ଆସିଲା ଆଗରୁ ଦେଶ ମିଶ୍ରଣ କମିଟି ପାଣ୍ଠିର ଟଙ୍କା ନିଅଣ୍ଟ ହେବାରୁ ବହୁତ ଟଙ୍କା ସେ ହାତରୁ ଖର୍ଚ୍ଚ କରି ଦେଉଥିଲେ । ଲୋକମଙ୍ଗଳ, ଦେଶମଙ୍ଗଳ ପାଇଁ ତାଙ୍କର ଦାନ ଓ ତ୍ୟାଗ ଅମାପ । ଯେଉଁଟି କାମପାଇଁ ଟଙ୍କା ଖର୍ଚ୍ଚ କରୁଥିଲେ କି କମିଟିକୁ ବା ବ୍ୟକ୍ତିକୁ ଦେଉଥିଲେ, ସେ କଥା ଘରେ କି ଆତ୍ମୀୟମାନଙ୍କୁ ମଧ୍ୟ କହୁ ନଥିଲେ ।

ତାଙ୍କର ସହାନୁଭୂତିଶୀଳ ହୃଦୟ ଏବଂ ସ୍ନେହଶୀଳ ସ୍ୱଭାବ ବଳରେ ଏପରି ଗୋଟିଏ ବ୍ୟକ୍ତିତ୍ୱ ତାଙ୍କର ଗଢ଼ିଉଠିଥିଲା, ଯାହାର ତୁଳନା କି କଳନା କରିହୁଏ ନାହିଁ ।

ଅନ୍ୟାୟ ବିରୁଦ୍ଧରେ ନରମପନ୍ଥୀ ହେଲେବି ଅସହିଷ୍ଣୁ ଓ ବିରୋଧ ଭାବ ପୋଷଣ କରୁଥିଲେ; ମାତ୍ର ତାହା ପ୍ରତିଦ୍ୱନ୍ଦ୍ୱିତା କି ସଂଘର୍ଷ କ୍ଷେତ୍ରରେ କୌଣସି ବ୍ୟକ୍ତି ପ୍ରତି ପ୍ରଯୁକ୍ତ ନଥିଲା । ସେହି ସ୍ୱଭାବ ତାଙ୍କୁ ରାଜନୀତି କ୍ଷେତ୍ରରେ ଚିରକାଳ ସରକାର ବିରୋଧୀ ଲୋକ ଥାଇ ମଧ୍ୟ "ମାଡ଼ାଦଳିଆ ରାଜନୀତିକ" କରି ଗଢ଼ିଥିଲା । ସେଥିପାଇଁ ସେ ନିଜର ପ୍ରାଦେଶିକ ସ୍ୱାର୍ଥ ବ୍ୟାହତ ହୋଇଯିବା ଆଶଙ୍କା ରଖି ଗାନ୍ଧିଜୀଙ୍କ ଡାକକୁ ବଧିର ହୋଇ-

ଥିଲେ । ଅହିଂସା ଓ ଅସହଯୋଗ (Nonviolence and Truth)" ର ପ୍ରଚାରଣା ଶୁଣି ଓ ବିଦେଶୀ ବର୍ଜନ, ନିଶା ନିବାରଣ,'ସ୍ୱରାଜ' ପ୍ରଭୃତିର ପ୍ରଲୋଭନୀୟ ଫଳ ଶୁଣି ମଧ୍ୟ ସେ ସେତିକି କାଳରେ ନିଜର ଆଦର୍ଶ ଓ ମତ ବିରୋଧରେ କଂଗ୍ରେସ ରାଜନୀତିରେ ପଶିବାକୁ ମନବଳାଇ ନଥିଲେ । ଇଂରେଜ ପ୍ରତି ବିରାଗ ଭାବ ତାଙ୍କର ବରାବର ରହିଥିଲା । ସେ Dominion Status ବା ସ୍ୱାୟତ୍ତ ଶାସନ ଚାହୁଁଥିଲେ । ନିଜ ଦେଶ ଲୋକ ପୁରା ପ୍ରସ୍ତୁତ,ନହେଲେ ଓ ନିଷ୍ଠାବାନ ଚରିତ୍ରବାନ୍ ନହେଲେ ଜାତୀୟ ଜୀବନରେ ଏବଂ ଦେଶ ସମାଜରେ ସ୍ୱରାଜ ଓ ସ୍ୱାଧୀନତାର କିଛି ଅର୍ଥ ହୁଏ ନାହିଁ ଏବଂ ଦେଶ ଉପରେ ତାର ପ୍ରତିକ୍ରିୟାଶୀଳ କୁପ୍ରଭାବ ମଧ୍ୟ ପଡ଼ିବା ସ୍ୱତଃସିଦ୍ଧ । ସୁତରାଂ ଓଡ଼ିଆ ଲୋକଙ୍କ ପୂର୍ଣ୍ଣାଙ୍ଗ ପ୍ରଦେଶ ପାଇଁ ଦେଶ ମିଶଣ ଆନ୍ଦୋଳନ ଓ ସଂଗ୍ରାମକୁ ଏଡ଼ାଇ ଦେଇ ଏବଂ ଦେଶର ଅଗଣିତ ମୂର୍ଖ ଓ ଦରିଦ୍ରଙ୍କୁ ଅଙ୍କ ରଖି ଯେଉଁ 'ସ୍ୱରାଜ' ଆସିବ, ତାହା କେହି ଭୋଗ କରି ପାରିବେ ନାହିଁ । ତେଣୁ ଓଡ଼ିଆ ସବୁ ଦିଗରୁ ନିଜକୁ ତିଆର କରିପାରେ ସ୍ୱରାଜ ସଂଗ୍ରାମ ରାଜନୀତିରେ ଯୋଗଦେବା ଦରକାର; ତାହାହେଲେ ସେ ଯୋଗ ଦେବେବୋଲି ଆମକୁ କହୁଥିଲେ । କଂଗ୍ରେସ ସ୍ୱରାଜୀ ସଂସ୍ଥା ପାଇଁ ସେ ଜଣେ ଭକ୍ତ ହସ୍ତରେ ଚାନ୍ଦା ଦେଇଥିଲେ । ଏହା ତାଙ୍କର ପରସ୍ପର ବିରୋଧୀ ପ୍ରବୃତ୍ତିର ପରିଚୟ ଦିଏ । ଲୋକାଚାର ଓ ସାମାଜିକ ବିଧି ରକ୍ଷା ପାଇଁ ମଧ୍ୟ ବ୍ୟକ୍ତିର କର୍ତ୍ତବ୍ୟ ଅଛି । ସେହି କର୍ତ୍ତବ୍ୟ ସେ ସାମାଜିକ ଓ ପାରିବାରିକ କ୍ଷେତ୍ରରେ ପାଳନ କରୁଥିଲେ ।

'ମୁକୁର' ଓ ଆଉ ଖଣ୍ଡେ ଇଂରାଜୀ ସାପ୍ତାହିକ 'The Oriya' ସମ୍ପାଦନା କରୁଥିଲେ । ଏହା ତାଙ୍କର ରୋଜଗାର ଓ ପ୍ରତିଷ୍ଠା ଉଦ୍ଦେଶ୍ୟାର୍ଥେ ନଥିଲା । କରିଥିଲେ କେବଳ ଲୋକ ଶିକ୍ଷାପାଇଁ । ଉତ୍କଳ ସମ୍ମିଳନୀର ସେ କର୍ଣ୍ଣଧାର ଥିଲେ । ପୁଣି ଓଡ଼ିଶା ପିପଲ୍‌ସ ଆସୋସିଏସନ୍‌ରେ ଯେ କୋଡ଼ିଏ ବର୍ଷ କାଳ ସଭାପତି ରହି ପ୍ରାକୃତିକ ଓଡ଼ିଶାର ଓ ଓଡ଼ିଶା ଯୁବକମାନଙ୍କର ଚାକିରୀ ବାକିରୀ ସ୍ୱାର୍ଥପାଇଁ ବହୁତ କାର୍ଯ୍ୟ କରିଥିଲେ । ବିହାର, ମାନ୍ଦ୍ରାଜ ଦୁଇ ପ୍ରଦେଶ ତଳେ ଓଡ଼ିଆ ଜାତି ଜୀବନ୍ତ କବର ପାଇ ପେଷି ହୋଇ ରହିବାର ଦାରୁଣ ଦୁଃଖ ସେ ଜୀବନସାରା ଭୋଗ କରିଛନ୍ତି । ଫିଲ୍‌ଫଡ଼୍ କମିଟି କମ୍ବା ଓଡନେଲ କମିଟି, ଯେଉଁ କମିଟି

ଇଂରେଜ ବସାଉଥିଲା, କଂଗ୍ରେସବାଲାମାନେ ତାଙ୍କରେ ଅସହଯୋଗ କରୁଥିବାରୁ ତାଙ୍କର ବଡ଼ ଦୁଃଖ ହେଉଥିଲା ।

ସେ କହୁଥିଲେ "ଏ ସୋଦର ଛୁଣ୍ଡା ବୁଦ୍ଧି ଓଡ଼ିଆ କରୁଥିବା ଯାଏ, ଓଡ଼ିଶା ଏକାଙ୍ଗୀକରଣ ହେବନାହିଁ । ସ୍ୱରାଜ ଯଦି ଆସିବ, ସବୁ ପ୍ରଦେଶ ହସିବେ, ମାତ୍ର ଓଡ଼ିଶା ପ୍ରଦେଶ ଚିରକାଳ କାନ୍ଦୁଥିବ । ଓଡ଼ିଆମାନେ ଜୀବନ୍ତ କବର ପାଇଯିବେ । ତାଙ୍କର ସାହା ଭରସା କେହି ନଥିବେ । ଓଡ଼ିଆ ଜାତିର ପ୍ରାଣ ମଧୁବାବୁ ମନ୍ତ୍ରି ହେଲେ ବୋଲି ତାଙ୍କର ପ୍ରତିମୂର୍ତ୍ତିକୁ କଂଗ୍ରେସ ଲୋକେ ଜଳେଇ ଦେଇଥିଲେ । ଏହି ପାପର ଫଳ ଓଡ଼ିଆଜାତିକୁ ଚିରଦିନକୁ ଭୋଗ କରିବାକୁ ହେବ । କଂଗ୍ରେସରେ ଯେଉଁ ଓଡ଼ିଆମାନେ ରହିଲେ, ସେମାନେ ଓଡ଼ିଆ ଜାତିର ସତ୍ତା ଲୋପ କରି ତାଙ୍କ ସ୍ୱାର୍ଥ ଓ ନିଜର ପ୍ରତିଷ୍ଠା ପାଇଁ ଭବିଷ୍ୟତରେ ଧନକୁବେର ହେବାକୁ ଓଡ଼ିଆ ଜାତିର ସ୍ୱାର୍ଥକୁ ଜଳେଇ ଦେଲେ । ମହାଭାରତର ଜୟଗାନ କଲେ । ସେମାନଙ୍କ ଦଳସ୍ୱାର୍ଥ ଓ ବ୍ୟକ୍ତି ସ୍ୱାର୍ଥପାଇଁ, ଜାତିକୁ ଉଚ୍ଛନ୍ନ କରି ଜାତିର ଅଣ୍ଟା ଭାଙ୍ଗି ଦୁର୍ବଳ କରିଦେଲେ । କଂଗ୍ରେସିଙ୍କର ମେରୁଦଣ୍ଡ ସବୁକାଳେ ଦୁର୍ବଳ । ତାହା ଉପରୁ ନେତାଙ୍କ ଗୃହରେ ଦୋହଲେ । ମୁଁ ଜାଣି ଜାଣି ଦେଶସେବା ନାଁରେ ଓଡ଼ିଆ ଦେଶର ସ୍ୱାର୍ଥକୁ ବୁଡ଼ାଇ ତୁମରିମାନଙ୍କ କଥାରେ ଜେଲଯାଇ କି ଲାଭ ପାଇବି ? ଆଣ୍ଠୁଏ ପାଣିରେ ବୁଡ଼ିଯିବାକୁ ଗଲେ କ'ଣ ଲୁଗା ଓଦା ହେବ ଯେ ତମରି ମାନଙ୍କ ବକ୍ତୃତା ଶୁଣି ମୁଁ ତମରିମାନଙ୍କ ଜାଲପଡ଼ା ପୋଖରୀ ପଙ୍କରେ ବୁଡ଼ିକରି ନିଖିଳ ଭାରତମାତା ଗୀତ ଗାଇବାକୁ ଯିବି ? ମୋର ଦେଶ—ନେତା ହେବା, ମନ୍ତ୍ରୀ ହେବା ଦରକାର ନାହିଁ, କି ତମ କଂଗ୍ରେସ ଅନୁଗ୍ରହ ନିଗ୍ରହ ଦରକାର ନାହିଁ । ମୋର ନୀତି ବଗ୍ଗୁର ଅଲଗା । ଆଗ ମୋର ଘର, ତାପରେ ତୋ ଘର । ମୋର ଓଡ଼ିଆ ଦେଶ ଭାସି ଯାଉଛି,— ବୁଡ଼ିଯାଉଛି । ମୁଁ ତମମାନଙ୍କର ଭାରତମାତା ଗୋଡ଼ ଜଞ୍ଜିର ଫିଟାଇବାକୁ ଜେଲ୍ ଯିବି କାହିଁକି ? ମୋର ଓଡ଼ିଆ ଦେଶଭାଇ ଧୋପ୍କାରେ କାଙ୍ଗାଳ ହୋଇ ଗଡ଼ି ମରୁଛନ୍ତି । ତାଙ୍କର ସେବା କରିପାରୁନି । ଭାରତମାତା ସନ୍ତାନ ୩୨ କୋଟି ଲୋକଙ୍କର କି ସେବା କରିବି ? ମୋର କଳ୍ପନା-ଆଦର୍ଶବାଦରେ ବିଶ୍ୱାସ ଆସୁନାହିଁ । ବାସ୍ତବ ଓ ଆଦର୍ଶବାଦରେ କେବଳ ଯାହା ସମସ୍ୟା

ଦେଶରେ ଅଛୁ ସେଥିକି ଆଖି ନପକାଇ, କ'ଣ ମାନ୍ଦ୍ରାଜ କଲିକତାର ଯୋଉଁ ଲୋକଙ୍କୁ ଚଲେଇନାହିଁ, ତାଙ୍କ ସମସ୍ୟା ସମାଧାନପାଇଁ ହେବବ ? ମୋର ଓଡ଼ିଆ କଂଗ୍ରେସନେତା କିମ୍ବା ମହାତ୍ମାଗାନ୍ଧୀଙ୍କ କଂଗ୍ରେସରେ କମା ବିଶ୍ୱାସ ନାହିଁ । ଆଉ ଓଡ଼ିଆ ଲୋକେ କଂଗ୍ରେସରେ ପଶି ଓଡ଼ିଆ ଦେଶର ସ୍ୱାର୍ଥ ନଷ୍ଟ ଭ୍ରଷ୍ଟ କରୁଛନ୍ତି ବୋଲି ମୁଁ ତା' କରି ପାରିବନାହିଁ ।'' ମୁଁ ତାଙ୍କୁ କଂଗ୍ରେସ ମେମ୍ବର ହେବାକୁ ଯେତେଥର ଅନୁରୋଧ କରିଛି ସେ ଏଇକଥା ସେତେଥର କହିଛନ୍ତି ।

ମୁଁ ତାଙ୍କୁ ଖଦଡ଼ ପିନ୍ଧିବାକୁ କହିଥିଲି । ଖଦଡ଼ ପିନ୍ଧିବାକୁ, ଖଦୀ ବିକିବାକୁ ତାଙ୍କ ନିକଟକୁ ଲୁଗାନେଇ ଗଲି । ସେ କହିଲେ, ''ମୁଁ ବରାବର ହାତବୁଣା ଲୁଗା ପିନ୍ଧେ । ଆମ ଗାଁରେ ବାଉରୀ ମଧ୍ୟ ବୁଣା ଧୋତି ପିନ୍ଧନ୍ତି । ମଧୁବାବୁ କୋଉକାଳୁ ଦେଶୀଲୁଗା ପିନ୍ଧିବାକୁ କହିଥିଲେ । ତାହା କେହି ଶୁଣି ନଥିଲେ । ଏଇନେ ତୁ ଖଦୀ ଆଣିଛୁ ବୋଲି କ'ଣ ମୁଁ ତୋ କଥାରେ ଲୁଗା ପାଲଟି ଖଦଡ଼ ଲୁଗା କିଣି ପିନ୍ଧିବ ? ତୁ ମୋ କଥାରେ ଚାଲିବୁ ନା, ମୁଁ ତୋ କଥାରେ ଚାଲିବ ?'' ହସିଲେ ଖୁବ୍ ସେ,—ଏ କଥା କହି ।

ଯାଜପୁର ଘଟିରୁ ''ମୁକୁର ପ୍ରେସ୍''ରେ ତାଙ୍କର ମୂଳ ବାସଗୃହ ଥିଲା । ମୁଁ ପ୍ରାୟ ସେଠାକୁ ଯିବା ଆସିବା କରୁଥିଲି । ସେ ମୋତେ ବଡ଼ ସ୍ନେହ କରୁଥିଲେ । ମୁଁ କଂଗ୍ରେସରେ ମିଶିଲି, ଖଦଡ଼ ପିନ୍ଧିଲି, ଗହଣା ଛାଡ଼ିଲି । କିନ୍ତୁ ମୋର ମୂଳରୁ ଦେଶମିଶ୍ରଣ ଆନ୍ଦୋଳନ ଓ ଓଡ଼ିଶା ଏକୀକରଣ ପ୍ରତି ଶ୍ରଦ୍ଧା ଥାଏ । ୧୯୩୦ରେ ଓଡ଼ିଶାରୁ କେତେକ ଓଡ଼ିଆଙ୍କ ସ୍ୱାର୍ଥରକ୍ଷା ଓ ମେଦିନୀପୁର ଓଡ଼ିଶାରେ ମିଶ୍ରଣ ପାଇଁ, ମେଦିନୀପୁର ଯାଇ ଓଡ଼ିଆଙ୍କୁ ଉଦ୍‌ବୋଧନ ଦେଇ, ଓଡ଼ିଆ ଭାବ ଅଣାଇ ଓଡ଼ିଶାରେ ମିଶି, ଆନ୍ଦୋଳନ କରିବା ପାଇଁ ଉତ୍କଳ ସମ୍ମିଳନୀ ନେତାମାନେ ଠିକ୍ କଲେ । ଶ୍ରୀ ଗୋପାଳ ପଟ୍ଟନାୟକ, ଶ୍ରୀ ବଂଶୀଧର ପଟ୍ଟନାୟକ, ଶ୍ରୀ ନୃସିଂହଚରଣ ମହାନ୍ତି, ଶ୍ରୀ ବାଞ୍ଛାନିଧି ପଟ୍ଟନାୟକ ପ୍ରମୁଖ କେତେକ ଓଡ଼ିଆ ଯୁବକ ଏହି କାମରେ ଖୁବ୍ ଉତ୍ସାହିତ ହୋଇ କଟକରେ ଚାନ୍ଦା ସଂଗ୍ରହ କରୁଥାନ୍ତି କଲେଜ ପରିସରରୁ । ଏ କାମରେ ଟଙ୍କା ଦରକାର ହେଲା । କଂଗ୍ରେସ ଲୋକେ ଏ କାମକୁ ଚାଲୁକାମ ବୋଲି

କହି ସ୍ୱରାଜ ପାଇଁ ଗୁହାରି ମାଗୁଥାନ୍ତି । ଲୋକେ ଦୋ-ବନ୍ଧାରେ ପଡ଼ିଥିବାରୁ ପଇସା ମିଳୁନଥିଲା ଏହି କାମପାଇଁ । ତେଣୁ ହାତରୁ ଖର୍ଚ୍ଚ କରୁଥିଲେ ଦେଶ କାମପାଇଁ ।

ସେ ସମୟରେ ମୁଁ କେତେକ ବିଶିଷ୍ଟ ପରିବାରର ନାରୀମାନଙ୍କୁ ଏକତ୍ର କରି ପହିଲେ 'ମୁକୁର ପ୍ରେସ'ରେ ଆନନ୍ଦ ବଜାର ଆରମ୍ଭ କରିଥିଲି । ୪।୫ ଦିନ ଆମ ଦୋକାନରେ ଖୁବ୍ କିଣାବିକା ହେଲା । କଟକର ବୋହୂମାନେ ବାହାରେ ନ ଥିବାରୁ ସେମାନେ ଦୋକାନ ଦେଇଥିବା ନୂଆକଥା ଦେଖିବାକୁ ଆସି ବେଶି ଲୋକ କିଣୁଥାନ୍ତି । ସେମାନେ କୁତୁହଳ ହୋଇ କାହା ସ୍ତ୍ରୀ, ଏ ? କିଏ ଏ ? ବୋଲି ମନ୍ତେ ପଚାରୁଥାନ୍ତି । ଏ କାମଟିକୁ ସୁରୁଖୁରୁରୂପେ କରିବା ପାଇଁ ବ୍ରଜସୁନ୍ଦର ବାବୁ ପ୍ରେସର ଉପର ଘରଗୁଡ଼ିକ ଖାଲି କରି ମୋତେ ଛାଡ଼ିଦେଇ ଥାନ୍ତି । ଆନନ୍ଦବଜାର ବିକାକିଣାରେ ଟ ୧୩୫ ୮ ଲାଭ ହୋଇଥିଲା । ତାକୁ ମୁଁ ବ୍ରଜସୁନ୍ଦର ବାବୁଙ୍କ ହାତରେ ଆମ ଓଡ଼ିଆ ନାରୀମାନଙ୍କ ତରଫରୁ ଦେଇଥିଲି । ସେହି ଟଙ୍କା ଅନ୍ୟ ଗୁହାରି ଟଙ୍କାରେ ମିଶିବାରୁ ରେଲ ଖର୍ଚ୍ଚ କରି ଓଡ଼ିଆ ଯୁବକମାନେ ମେଦିନୀପୁର ଗଲେ । ଟ୍ରେନରେ ସେମାନେ ଗଲାବେଳେ ମୁଁ ଚନ୍ଦନ, ସିନ୍ଦୂର, ଲଗାଇ ଦେଇଥିଲି । ସେହି ଯୁବକମାନେ, ପୁଅମାନେ 'ଜୟ ଉତ୍କଳ ମାତାକୁ ଜୟ' ନାଦ କରି ଟ୍ରେନରେ ଗଲେ । ବ୍ରଜସୁନ୍ଦର ବାବୁ ମଧ୍ୟ ସେହି ପିଲାମାନଙ୍କୁ ଉତ୍ସାହ ଦେଇ ପଠାଇବାକୁ ଷ୍ଟେସନକୁ ଯାଇଥିଲେ । ଫେରିଲାବେଳେ ସେ କହିଲେ "ଏତେ କଥାକୁ ବିରେନ୍ ଶାସମଲ ମାଡ଼ ଖାଇ ଓଡ଼ିଆ ଟୋକାଏ ଯଦି ଭଲକରି ଫେରି ଆସିବେ ତେବେ ଆମର ଇଜ୍ଜତ ବି କଡ଼ା ହେବ ।" ମୁଁ ମଧ୍ୟ କହିଲି, 'ଆମ ଆନନ୍ଦ ବଜାର ମେହେନତ ବି ନିଷ୍ଫଳ ହେବ—ଲୋକହସା ହେବ ।' ବ୍ରଜସୁନ୍ଦର ବାବୁ ବିମର୍ଷ ହୋଇ କହିଲେ—ଲକ୍ଷ୍ମୀନାରାୟଣ ପଟ୍ଟନାଏକ, ଲାଲମୋହନ ପଟ୍ଟନାଏକ, ଶଗୀରଥ, ନିରଞ୍ଜନ ପଟ୍ଟନାଏକ, ଯୋଗୀନ୍ଦ୍ର ଆଗୁଆଁ, ଯଦୁମଣି ମଙ୍ଗରାଜ, ମଧୁବାବୁ, କନିକା ରାଜା, ପାରଳା ରାଜା, ଭୁବନାନନ୍ଦ ଦାସ, ବିଚିତ୍ରାନନ୍ଦ ଦାସ, ଭିକାରୀ ବାବୁ, ନୀଳକଣ୍ଠ ଦାସ, ଗୋଦାବରୀଶ ମିଶ୍ର ପ୍ରମୁଖ କେତେ ଜଣ ଆମେ ଏଥିରେ ମନ ଦେଇଛନ୍ତି । କେତେକ ଯୁବକ ପଛରେ ଅଛନ୍ତି । ନେତା ଗୋପବନ୍ଧୁ ଦାସ ଏ ଦିଗରେ

ମୂଳରୁ କାମ କରି ଶେଷରେ କଂଗ୍ରେସରେ ମିଶି, କଂଗ୍ରେସ ରାଜନୀତି କଲି । ଆମ ଦେଶର ନେତା ବି ଫାଙ୍କ୍ । ଆଜି ଅସହଯୋଗିତ ଦେଶପାକ ସାହେବଙ୍କ ସଙ୍ଗେ କଲେ । ଆଜି ଏ କାମ କେମିତି ହେବ ? ମଧୁ ବାବୁଙ୍କୁ ତ ତମ ଗୋଷ୍ଠୀ ଜାଇନ୍ତା ଜବର ଦେଲେ । ସେ ସିନା ଲଗିଥିଲେ । ଆମେ ଆଗ ନିଜ ଗୋଡ଼ରେ ଠିଆ ନ ହୋଇ ପରଗୋଡ଼ରେ ଠିଆ ହେଲେ ସ୍ୱରାଜ୍ୟ କିଏ ଭୋଗ କରିବ ? ଓଡ଼ିଆ ଜାତିର ଉନ୍ନତି କେବେ ହେବ ନାହିଁ । ଅନ୍ୟ ପ୍ରଦେଶ ବାଲା ଆମଠୁଁ ଉନ୍ନତ । ସେ ସ୍ୱରାଜ୍ୟ ଆନ୍ଦୋଳନରେ ରହି ତାଙ୍କ ଦେଶକୁ ଆହୁରି ବଡ଼ କରିବେ । ଆମର ଓଡ଼ିଆଙ୍କର ଢିଙ୍କି ସ୍ୱର୍ଗକୁ ଗଲେ ଧାନ କୁଟୁଥିବ । ଓଡ଼ିଆଙ୍କର ବାପା, ମା ନାହିଁ । ଗୁହାରି ଶୁଣିବ କିଏ ? ଆମେତ ନନ୍‌କୋପରେସନ୍ କରି ସରକାରକୁ ବାହାର କରିଦେବା । ଓଡ଼ିଶାର ଉନ୍ନତି କେମିତି ହେବ ?'' ମୁଁ କହିଲି—ଆପଣ କଂଗ୍ରେସରେ ମିଶନ୍ତୁ, ଦେଶ ମିଶ୍ରଣ କାମରେ ସୁବିଧା ହେବ । ସେ କହିଲେ—ତୁ ପିଲା ଲୋକ, ରାଜନୀତି କ'ଣ ମୋତେ ଶିଖାଇବୁ ? ଆଜି ତୋ କଥାରେ ମୁଁ କଂଗ୍ରେସ ମେମ୍ବର ହୋଇ ଓଡ଼ିଆ ଜାତିର ଅଭିଶାପ ନେବି ? କଂଗ୍ରେସରେ ଓଡ଼ିଆ ସ୍ୱାର୍ଥ ପାଇଁ କାର୍ଯ୍ୟ କରିବାକୁ ଦୃଢ଼ ଥିବାରୁ ନୀଳକଣ୍ଠ, ଗୋଦାବରୀଶ, ମଙ୍ଗରାଜଙ୍କୁ କଂଗ୍ରେସରୁ ବିତାଡ଼ିତ କରାଗଲା । କିଛିଦିନ ପରେ ଆମର ଧାରଣା ଯଥାର୍ଥ ହେଲା । ମେଦିନୀପୁରିଆ ବ୍ୟବହାରରେ ବାଟରେନ୍ ଶାସମଲ୍ଲର ବିରୋଧ ସହି ନ ପାରି ହଇରଣ ଓ ନିରୁତ୍ସାହିତ ହୋଇ ଓଡ଼ିଆ ପିଲାଏ କଟକ ଫେରି ଆସିଲେ । ବ୍ରଜ ବାବୁ କହିଲେ, ଆମ ବଳ କଷାକଷିର ଫଳ ଜଣାଗଲା । ଏଣିକି ତୁନି ରହିବା । ମୁଁ କହୁଥିଲି, ପିଲାମାନେ ସେଠି ମାଡ଼ ଖାଇ ମରିଯିବେ ପଛକେ ଘରମୁହାଁ ହୋଇ ଡରକରି ପଳାଇ ଆସିବେ ନାହିଁ । ଆଗରୁ ତ କେହି ଯାଇ କ୍ଷେତ୍ର ତିଆରି କରି ନ ଥିଲେ । ଓଡ଼ିଆ ପିଲାଏ ହଠାତ୍ ଯାଇ କଣ କରିଥାନ୍ତେ ବା ? କଲବାଲାତ ଅଖିଳ ଭାରତ ଭାବ ଧରି ରାଜନୀତିରେ ପଶି ଅସହଯୋଗ କଲେ । ଆମ ଭିତରେ ଏକତା କି ଜାତୀୟ ଆଦର୍ଶ ନାହିଁ ? ଯେଝା ସ୍ୱାର୍ଥରେ ସେ ରହିଲେ । ଓଡ଼ିଆ ଆନ୍ଦୋଳନ ଗଞ୍ଜାମ ଜିଲ୍ଲାରେ ସିଂହଭୂମିରେ ହୋଇ କଣ ହେବ ? କଟକରେ, ପୁରୀରେ, ବାଲେଶ୍ୱରରେ ଲୋକ ନେତାଙ୍କ ଭିତରେ ଯୋର ଶବ୍ଦ ନାହିଁ । କେବଳ ସରକାରୀ କମିଟିରେ ସାକ୍ଷୀ ଦେଲେ, ପ୍ରମାଣ ଦେଲେ କ'ଣ

ସରକାର ଦେଶ ମିଶ୍ରଣ କରିବେ ? ଯୋଉଁଏ ଜାତିର ଆଦର୍ଶ ଜାତୀୟ ଜୀବନରେ ନ ରହିଲେ ତାର ସିଦ୍ଧି କାହିଁ ? ଆମର ତ୍ୟାଗ ନାହିଁ କି ପ୍ରବଳ ଇଚ୍ଛା ଶକ୍ତି ନାହିଁ । ସଭାରେ ଓଡ଼ିଆ ଜନକଜନନୀ ଗୌରବ ଗୀତ ଗାଇ ବାରବାଟୀଦୁର୍ଗ ବନ୍ଦି ଦେଖିଲେ କଣ ଓଡ଼ିଶାର ପୂର୍ଣ୍ଣାଙ୍ଗ ହେବ ? ମମତା ବଡ଼ କଥା । ସରକାରଙ୍କୁ ଗାଳିକରି ଶୋଭାଯାତ୍ରା କରି ବଡ଼ ସଭାରେ ଖବରକାଗଜରେ ପ୍ରସ୍ତାବ ଛପା ହେଲେ ଶାଗ ସିଝିବ ନାହିଁ ।"

ମୁଁ କହିଲି, ଆପଣ ବୃଥା ବ୍ୟସ୍ତ ହୁଅନ୍ତି । କିନ୍ତୁ ଇଂରେଜ ହାତରୁ ଆମେ ନ ମୁକୁଳିବା ଯାଏ କେବେ ହେଲେ ଅଖଣ୍ଡ ଓଡ଼ିଶା ହେବ ନାହିଁ । ଇଂରେଜମାନେ ତ ହିନ୍ଦୁ ମୁସଲମାନ ଦ ଫାଙ୍କ କରି ସେମାନଙ୍କ ଶାସନ ବଞ୍ଚାଇ ରଖିଛନ୍ତି । ସେଇମାନେ ସବୁ ପ୍ରଦେଶ ଭାଙ୍ଗି ଦିଖଣ୍ଡ ତିନିଖଣ୍ଡ କରି ଯୋଡ଼ାଯୋଡ଼ି କରି ଆମର ଜାତୀୟ ଭାବ ସହଜ ଭାଙ୍ଗିଛନ୍ତି । ଆଗ ସ୍ୱରାଜ ଦରକାର । କଂଗ୍ରେସ ତ ଭାଷା ସୂତ୍ରରେ ପ୍ରଦେଶମାନଙ୍କୁ ଗଢ଼ିବ ବୋଲି ପ୍ରସ୍ତାବ କରିଛି ।

ବ୍ରଜସୁନ୍ଦରବାବୁ ଚିଡ଼ିକରି କହିଲେ "ତମ ଗାନ୍ଧୀମହାତ୍ମା କରିବେ, କଂଗ୍ରେସ କରିବେ ! ଆମେ ମରିଗଲୁ । ତମେସବୁ ରହି ଦେଖିବ—ଭୋଗ କରିବ । ଓଡ଼ିଆଜାତିର ବଡ଼ ନେତାମାନଙ୍କର ଦାୟାଦ କେହି ନାହିଁ । ଓଡ଼ିଆ ଭାବ ଭାଷା ସଂସ୍କୃତି ସ୍ୱଭିମତ ତା ଅନୁକରଣ ଉପରେ ତମେମାନେ ଚଳେଇଛ । ନିଜ ଭାଷା ଗୃହଚରଣ ସ୍ୱତନ୍ତ୍ର ପରମ୍ପରା ଭାଙ୍ଗି ଗୋଟିଏ ମିଶା ସଂସ୍କୃତି ମିଶା ଜାତିରେ ମିଶା ହବାକୁ ଯାଉଛ । ତମେମାନେ କଦାପି ନିଜ ଗୋଡ଼ରେ ଠିଆ ହେଇ ବଡ଼ ହେଇ ପାରିବ ନାହିଁ । ସବୁଦିନେ ପର ପଛରେ ଗୋଡ଼େଇବ—ପରଭାଷାରେ କଥା କହିବ—ପର ଶାସନ ତଳେ ଚୁପି ହେଇ ରହିବ, ଏକ ହେବ ନାହିଁ । ଅଭିଶପ୍ତ ଜାତି ଓଡ଼ିଆ । ପରହିଂସା, ପରଶ୍ରୀକାତର, ଈର୍ଷାରେ ଜଳି-ପୋଡ଼ି ଆପଣା ହସ୍ତରେ ହାଡ଼କାଢ଼ି ପଙ୍ଗୁହେବ, ଦେଖିବ ରହିଥା । ତମ ଦେଶରେ ମଣିଷ ବୋଲି କାହାକୁ ଦେଖେ ନାହିଁ । ଗୋପବନ୍ଧୁ, ମଧୁସୂଦନଙ୍କୁ ଛାଡ଼ିଦେଲେ ଓଡ଼ିଆଜାତିପାଇଁ କେହି କାମ କରି ନାହିଁ । ମଧୁବାବୁ ଜୀବନ ଦେଲେ । ଆଜି ତମେ ସବୁ ଶଙ୍କର ଭାବଧରି ଦେଶସେବା ନାଁରେ ଆତ୍ମସେବା

କରିବା ମତଲବରେ ବୁଲୁଛ—ଲୋକଙ୍କୁ ଠକାଇ ବଡ଼ ବଡ଼ କଥା କହୁ ଭୁଲାଉଛ । ଓଡ଼ିଶା ଦୁର୍ବଳ ହେଲେ ତମ ଓଡ଼ିଆମାନଙ୍କୁ, ବଙ୍ଗ ପାଇଲେ ବି କେହି ଖାତିର କରିବେ ନାହିଁ । ତମର ଦୁର୍ବଳତାର ସୁବିଧା ନେଇ ସବୁଜାତି ଶୋଷି ସଫାକରି ଦେବେ । ତମ ବୁଦ୍ଧି ଖେଳୁନାହିଁ । ତମେ ଆତ୍ମଘାତକ ହେଉଛ ! ଲୋକଙ୍କୁ ଧପେଇ ଭୋଟ ନେଉଛ । ନିଜ ପ୍ରତିଷ୍ଠା ପଇସାକୁ ମୂଳ କରି ରାଜନୀତିକୁ ଗୋଟେ ବ୍ୟବସାୟ କରି ଦଳ କରୁଛ । ଦେଖିବ ! ତମ ନେତାମାନେ ତାଙ୍କ ନେତାମାନଙ୍କ ପାଖେ ଗୁହାରି କରୁଛନ୍ତି ! ତା ନହେଲେ ପାରଳା ରଜା ହାତରୁ ପଇସା ଖର୍ଚ୍ଚ କରି ତମପାଇଁ ଦିଲ୍ଲୀରେ ଲଢ଼ି ୭ଟି ଜିଲ୍ଲାରେ ଗୋଟେ ପ୍ରଦେଶ ମାଗିବାକୁ ଯାଇଥାନ୍ତା ? ଏକା ଗୋପବନ୍ଧୁ ଦାସ ଏ କାମରେ ଲାଗିଥିଲେ ପୂର୍ଣ୍ଣାଙ୍ଗ ଓଡ଼ିଶା କରି ପାରିଥାନ୍ତେ । ସେ କଂଗ୍ରେସରେ ପଶିଗଲେ—ଓଡ଼ିଶାର ବିଶେଷ କ୍ଷତି ହେଲା । ତାପରେ ଓଡ଼ିଆ ପୁଅ କେହି ନାହିଁ—ତାଙ୍କ ଚେଲାମାନେ ବି ହେଲେ ନାହିଁ । ସେ ଓଡ଼ିଶା ପାଇଁ ଭାବିଲେ କି କିଛି କଲେ, ସମସ୍ତଙ୍କର ପୁଅ ମୁଣ୍ଡକୁ ଓ ଚେଲା ଘଣ୍ଟାକୁ ହାତ ରହିଲା । ଆମ କାମ ସବୁ ଅଧାପନ୍ତର ରହିଲା । କଂଗ୍ରେସ ନେତା ଓଡ଼ିଶାର ସେବା କରିବା ନାଁ ଧରି ଭାରତ ନେତାଙ୍କ ଅନୁଗ୍ରହ ଲାଭ ଆଶାରେ ତାଙ୍କ ମନ ଧରି ତାଙ୍କ ପାଖେ ଦରଖାସ୍ତ କଲେ । ଯେ ନ କଲେ, ଓଡ଼ିଶା କଥା ଭାବିଲେ, ତାଙ୍କୁ ତମେମାନେ ହତାଦର କରି କାଢ଼ିଦେଲ !" ସେ ବହୁତ ବ୍ୟଙ୍ଗ କରି ଏସବୁ କଥା କହୁଥିଲେ ।

ବ୍ରଜସୁନ୍ଦରବାବୁ ଦିଲ୍ଲୀରେ ବହୁ ପୂର୍ବରୁ କେନ୍ଦ୍ର କାଉନ୍‌ସିଲରେ ବହୁକାଳ ଥିଲେ । ବିହାର ଓଡ଼ିଶା କାଉନ୍‌ସିଲରେ ମଧ୍ୟ ବହୁକାଳ ସଭ୍ୟ ଥିଲେ । ପୁଣି ବିହାରଠୁଁ ଓଡ଼ିଶା ପ୍ରଦେଶ ଅଲଗା ହେଲା ପରେ ଯେଉଁ ଏସେମ୍ବ୍ଲି ଗଢ଼ା ହେଲା, ତହିଁରେ ସେ ବିରୋଧ ପକ୍ଷ ନେତା ଥିଲେ । ଆମେ ସବୁ କଂଗ୍ରେସ ତରଫରୁ ୧୯୩୭ରେ ନିର୍ବାଚିତ ହୋଇ ଏସେମ୍ବ୍ଲିକୁ ଗଲୁ ।

ସରକାରୀ ବଜେଟ୍ କାଟ ପ୍ରସ୍ତାବରେ ସେ ସରକାରଙ୍କ ପ୍ରତି ବିଭାଗର ଶାସନକୁ ସମାଲୋଚନା କରି ଯୁକ୍ତି କାଢ଼ି ଭଷଣ ଦେଉଥାନ୍ତି ଏବଂ ସରକାରୀ

ବିଲ୍ ଗୁଡ଼ିକର ତୀବ୍ର ସମାଲୋଚନା କରି ଭାଷଣ ଦେଉଥାନ୍ତି । ତାଙ୍କର, ଭାବଗୋପନ ନ କରି ଅପୌରୁଷିକ ବିଷୟର ତୀବ୍ର ତୀକ୍ଷ୍ଣ ପ୍ରତିବାଦ ସୁସ୍ପଷ୍ଟ-ଭାବରେ ବ୍ୟକ୍ତ କରିବା ଏକ ପ୍ରଧାନ କର୍ତ୍ତବ୍ୟ ବିଷୟ ହେଉଥିଲା । ସେ ମନ୍ତ୍ରୀମାନଙ୍କୁ ବଡ଼ ହଇରାଣ କରି ନିଜର ଯୁକ୍ତି ଜାଲରେ ବ୍ୟତିବ୍ୟସ୍ତ କରି ପକାଉଥିଲେ । ମନ୍ତ୍ରୀମାନେ ତାଙ୍କର ଏବଂ ଗୋବିନ୍ଦ ପଟ୍ଟନାଏକଙ୍କ ପରାମର୍ଶ ଗ୍ରହଣ କରୁଥିଲେ । ବ୍ରଜସୁନ୍ଦର ବାବୁଙ୍କର ଭାଷଣକୁ ହାଲୁକା ଭାବରେ କେହି ଉଡ଼େଇ ପାରୁ ନ ଥିଲେ । ଯଦିଓ କଂଗ୍ରେସ ତରଫର ଅଧିକା ଭୋଟ୍ ବଳରେ ତାଙ୍କ ପ୍ରସ୍ତାବ ଓ ଯୁକ୍ତିକୁ ଏସେମ୍ବ୍ଲିରେ ନାକଚ କରି ଦିଆଯାଉଥିଲା । ବ୍ରଜବାବୁଙ୍କର ବିରୋଧ ଭାଷଣର ପ୍ରଧାନ ଉଦ୍ଦେଶ୍ୟ ଥିଲା, ଲୋକମଙ୍ଗଳ । ସେ କହୁଥିଲେ, ସରକାରଙ୍କ ଲୋକମଙ୍ଗଳ ପରିକଳ୍ପନା ଯଦି ମୋର ମନୋମତ ନ ହୁଏ, ମୁଁ ଯଦି ତହିଁରେ ଲୋକ ଅମଙ୍ଗଳ ଦେଖିବି, ତେବେ ନିଶ୍ଚୟ ପ୍ରତିବାଦ କରିବି । ମୋର କଥା ଭୋଟ୍‌ରେ କଟିଯିବ ପଛକେ, ମୁଁ କାଠ ପ୍ରସ୍ତାବ ଆଣି ପ୍ରତ୍ୟାହାର କରିବାକୁ ରାଜି ନୁହେଁ । ସେ ମନ୍ତ୍ରୀମାନଙ୍କ ପ୍ରତିପ୍ରସ୍ତାବକୁ ତନ୍ନତନ୍ନ କରି ବୁଝାଇବାକୁ ଆଉ ପ୍ରମାଣ ଦବାକୁ ଦାବୀ କରୁଥିଲେ । ସରକାରୀ ହିସାବ ପତ୍ର ଖର୍ଚ୍ଚକୁ ଠିକନଖି କରି ବୁଝାଇ କହିବାକୁ ଦାବୀ କରୁଥିଲେ ଆଉ ଏସେମ୍ବ୍ଲିରେ ପକାଇବାକୁ କହୁଥିଲେ । ସେ କହୁଥିଲେ ମୋର ମନ ନ ପାଇଲେ ମୁଁ ତମ ଖର୍ଚ୍ଚକୁ କଦାପି ସମର୍ଥନ କରିବି ନାହିଁ ।

ବ୍ରଜସୁନ୍ଦର ବାବୁ ଏସେମ୍ବ୍ଲିରେ ବିଶୁଦ୍ଧ ଇଂରାଜୀରେ ଭାଷଣ ଦେଉଥିଲେ । ଦେବୋତ୍ତର ବିଲ୍ ସରକାର ଉପସ୍ଥାପିତ କରିବାରୁ ସେ, ସରକାରୀ ଅଫିସର ନିଯୁକ୍ତ ହୋଇ ଟ୍ରଷ୍ଟିମାନଙ୍କ ସ୍ୱାଧୀନତା କ୍ଷୁଣ୍ଣ ହେବା ଦେଖି ସେହି ଆଇନ ବିରୁଦ୍ଧରେ ତୀବ୍ର ପ୍ରତିବାଦ କରିଥିଲେ । କଟକରେ ମେଡ଼ିକାଲ କଲେଜ, ଓଡ଼ିଶାରେ ବନ୍ଦରସ୍ଥାପନ ବିଶେଷତଃ କଟକ ସହରକୁ ରାଜଧାନୀ କରିବା ବିଷୟରେ ତାଙ୍କର ଭାଷଣ ଉଲ୍ଲେଖ-ଯୋଗ୍ୟ । ସେ ଅତି ସ୍ୱାଧୀନଚେତା ଲୋକ ଥିଲେ । ତାଙ୍କର ମାର୍ମିକଭାଷଣ ଅଖଣ୍ଡନୀୟ ଯୁକ୍ତିତର୍କ ସମସ୍ତଙ୍କୁ ଚମତ୍କୃତ କରୁଥିଲା । ମନ୍ତ୍ରୀମାନେ ତାଙ୍କ ମତକୁ, ଭାଷଣକୁ ବଡ଼ ଖାତିର କରୁଥିଲେ ।

ମୌଳିକଶିକ୍ଷା, ଖଦୀ ଗ୍ରାମୋଦ୍ୟୋଗ ପ୍ରଭୃତିର କର୍ମୀବୃନ୍ଦମାନଙ୍କୁ ସରକାରୀ ତହବିଲରେ ରହି ସରକାରୀ ଦରମା ଦେବାକୁ ଯେ କଂଗ୍ରେସ ରାଜନୀତି ପ୍ରଚାରର ଉଦ୍ଦେଶ୍ୟରେ କରାଯାଉଛି ବୋଲି ପ୍ରତିବାଦ କରିଥିଲେ ଓ ଏହା କଂଗ୍ରେସ ଶାସକମାନଙ୍କ ଦଳଗତ ଜବରଦସ୍ତି ଏବଂ ଅନ୍ୟାୟ ଅପକର୍ମ ବୋଲି ଏସେମ୍ବ୍ଲିରେ ତୀବ୍ରସ୍ୱର ଉଠାଇଥିଲେ । ସରକାର ସମବାୟ ବିଭାଗରେ ଅଫିସର ପୋଷି ଲୋକଙ୍କ ଟଙ୍କାର ଦାୟିତ୍ୱ ନ ନେଇ ଲୋକଙ୍କ ଟଙ୍କା ବୁଡ଼ାଇ ଗରିବ ଲୋକଙ୍କୁ ସମବାୟ ସମିତି ଫାନ୍ଦରେ ଗୁନ୍ଥି ସେମାନଙ୍କୁ ସର୍ବସ୍ୱାନ୍ତ କରାଯାଉଛି ବୋଲି କହିଥିଲେ । ସରକାରୀ ସମବାୟ ବିଭାଗର ଅଫିସରମାନେ ଦୁର୍ନୀତି ପରାୟଣ ହୋଇ ଘୁଷ୍ ଖାଇ ସରକାରଙ୍କୁ ମିଛ ରିପୋର୍ଟ ଦେଉଛନ୍ତି, ସରକାରଙ୍କୁ ଅନ୍ଧ କରି ରଖୁଛନ୍ତି । ଏହାଦ୍ୱାରା ଶାସନ ଦୁର୍ନୀତିଗ୍ରସ୍ତ ହୋଇ ଲୋକଙ୍କର ଅସମ୍ଭବ କ୍ଷତି ସ୍ୱାର୍ଥନାଶ ହେବା ବିଷୟରେ ସେ ବହୁତ କହିଛନ୍ତି । ସରକାର ଓଡ଼ିଆ ଛାତ୍ରମାନଙ୍କୁ ବୃତ୍ତି ଦେଇ ବିଦେଶରେ ଶିକ୍ଷା ଲାଭ ପାଇଁ ନ ପଠାଇବା ଦ୍ୱାରା ଓଡ଼ିଶାରେ ଅଫିସର ଅଭାବରୁ ଓଡ଼ିଶା ବାହାରୁ ଅଫିସର ଆଣି ରଖିବା ନୀତିର ସେ ତୀବ୍ର ପ୍ରତିବାଦ କରି ଏସେମ୍ବ୍ଲିରେ କହିଥିଲେ । ଓଡ଼ିଆ ଯୋଗ୍ୟ ଅଫିସର ମିଳୁ ନାହାଁନ୍ତି ବୋଲି ସରକାର ଯୁକ୍ତି ବାଢ଼ିଲେ, ସେ ଜଳି ଉଠୁଥିଲେ । ସରକାରଙ୍କର ସବୁ ଅନ୍ୟାୟର ସେ ପ୍ରତିରୋଧ କରନ୍ତି ଏସେମ୍ବ୍ଲିରେ । ଓଡ଼ିଆ ପିଲାଙ୍କୁ ଟଙ୍କା ଦେଇ ପଢ଼ାଇବାକୁ ସବୁ ବିଭାଗ ପାଇଁ ଯୋଗ୍ୟ ଅଫିସର ତିଆରି କରିବା ପାଇଁ ସେ ଜୋର ଦେଉଥିଲେ । ବିହାରକୁ ସରକାର ଟଙ୍କା ନ ଦେଇ ଓଡ଼ିଶାରେ ଇଞ୍ଜିନିୟରିଂ କଲେଜ ହାଇକୋର୍ଟ ପ୍ରଭୃତି କରିବାକୁ କହିଥିଲେ ।

ମେଦିନୀପୁର, ସିଂହଭୂମ, ମଧ୍ୟପ୍ରଦେଶ ଓ ମାନ୍ଦ୍ରାଜରେ ଯେଉଁ ଓଡ଼ିଆ ଗାଁମାନ ରହିଯାଇଛି, ଯେଉଁ ଓଡ଼ିଆମାନେ ସେଠାରେ ସବୁ-ଦିଗରୁ ଅବହେଳିତ ହୋଇ ନିଜ ଭାଷା ଛାଡ଼ି ଭିନ୍ନ ଭାଷା ପଢ଼ି ଭିନ୍ନ ଜାତି ବୋଲି ନିଜକୁ ବାଧ୍ୟରେ ସ୍ୱୀକାର କରନ୍ତି, ସେମାନଙ୍କ ପାଇଁ ବ୍ରଜବାବୁ ବଡ଼ ଦୁଃଖ କରୁଥିଲେ । ପ୍ରଦେଶ ଓଡ଼ିଆଙ୍କର ହେଲା । ସରକାର ଯେଉଁ ଓଡ଼ିଶା ପ୍ରଦେଶକୁ ସ୍ୱୀକାର କଲେ, ସେ ସମ୍ବନ୍ଧରେ ବ୍ରଜବାବୁ

ଏସେମ୍ବ୍ଲିରେ କହିଥିଲେ "Now this carring of the Province has not Satisfied genuine Oriyas." ଏ ପ୍ରଦେଶ ଖାଣ୍ଟି ଓଡ଼ିଆ-ମାନଙ୍କର ସନ୍ତୋଷ ବିଧାନ କରିନାହିଁ ।

ସାକ୍ଷରତା ପାଇଁ ସରକାର କଟକରେ ଦୁଇଟି ପୁସ୍ତକାଗାର କରିବାକୁ ଇଚ୍ଛା କରିବାରୁ ବ୍ରଜସୁନ୍ଦର ବାବୁ ଏସେମ୍ବ୍ଲିରେ କାଟ ପ୍ରସ୍ତାବରେ କହିଥିଲେ—

Sir, It is feared that these institutions may be Party-propaganda institutions You say, you will do everything to drive out illiteracy. There is nothing to show in the budget what is what. What are your Cards? You say, it is a lumpsum provison and the details have not been worked out. In the absence of this, it is very difficult to make up our minds as to whether we should vote for an item like this or not! I, for myself, am the last man to oppose the establis-ment of any library, that will contribute to drive out the demon of illiteracy from our land. But sir; I can not vote blindfold. What I mean to say is this, give us the details and put it before the house. So that we can discuss the matter threadbare Pros and Cons and Vote on the demand. That would be fare, equitable and just. But as it is, Sir; I can not persuade myself any way to vote for a demand like this, with eyes shut. With this I propose my cutmotion. ପ୍ରଧାନମନ୍ତ୍ରୀ ଶ୍ରୀ ବିଶ୍ୱନାଥ ଦାସଙ୍କ ପ୍ରସ୍ତାବର ବିରୋଧରେ ସେ ତାଙ୍କୁ ଉପଦେଷ୍ଟା ଭାବରେ କହିଥିଲେ ! ଏହି ଢଙ୍ଗର ଭାଷଣ ସେ ଦେଉଥିଲେ ।

ଯେତେଦିନ ସେ ବ୍ୟବସ୍ଥାପକ ସଭାର ସଦସ୍ୟ ହୋଇଥିଲେ, ତାଙ୍କର ଭାଷଣମାନ ଯଦି ସଂଗ୍ରହ କରାଯାଇ ଛପା ହୋଇ ଆଧୁନିକ ଯୁଗର (modern politicians) ରାଜନୀତି ବ୍ୟବସାୟରେ ଲିପ୍ତ ଥିବା ଏସେମ୍ବ୍ଲି

ସଭ୍ୟମାନଙ୍କୁ ବଣ୍ଟା ହୁଅନ୍ତା, ତେବେ ଆଧୁନିକ ସଭ୍ୟମାନେ ଭାଷଣର ରୂପରେଖ ମର୍ମ ବୁଝି କେତେକ କଥା ଜାଣନ୍ତେ । ଉଚ୍ଚ ଦେଶାତ୍ମବୋଧ ଓ ହଦ୍ ସଂସ୍କୃତି ଭାଷାରେ କଥା କହି ଶିଖିବା ମଧ୍ୟ ଏସେମ୍ବ୍ଲି ବା ପାର୍ଲିଆମେଣ୍ଟ ସଭ୍ୟମାନଙ୍କର ଶିଖିବା କଥା । କିନ୍ତୁ ଓଡ଼ିଶାରେ ଏହି ପରଂପରା ଶ୍ରୀ ବ୍ରଜସୁନ୍ଦର ଦାସ କେବଳ ଏସେମ୍ବ୍ଲିରେ ପକାଇ ଯାଇଛନ୍ତି । ଓଡ଼ିଆଙ୍କ ପାଇଁ ବ୍ରଜବାବୁ ଆଜୀବନ ଚିନ୍ତା କରିଛନ୍ତି, କାମ କରିଛନ୍ତି, ଟଙ୍କା ଖର୍ଚ୍ଚ କରିଛନ୍ତି । ସତରେ ଯଦି ତାଙ୍କଠି ଏ ଜାତିର ଦୁଃଖ, ଅଭାବ, ଦୈନ୍ୟର ବ୍ୟଥା ନଥାନ୍ତା, ତେବେ ତାଙ୍କ ବକ୍ତୃତା ଏତେ ଯୁକ୍ତିପୂର୍ଣ୍ଣ, ମନୁଷ୍ୟ ବର୍ଗର ଉପଯୋଗୀ, ନୀତିଯୁକ୍ତ ହୋଇ ନଥାନ୍ତା । ବ୍ୟବହାରିକ ଜୀବନରେ ତାଙ୍କର ଜ୍ଞାନ, ବିଦ୍ୟା, ବିଚାର, ବିବେକ ସବୁ କିଛି ତାଙ୍କ ଭାଷଣମାନଙ୍କରେ ଦେଖା ଯାଇଛି । ତାଙ୍କ ତୁଲ୍ୟ ଉଚ୍ଚାଙ୍ଗର ହୃଦ୍ୟ ଭାଷଣ କୌଣସି ନେତା ଓଡ଼ିଶା ଏସେମ୍ବ୍ଲିରେ ଦେବା କେହି ଶୁଣି ନଥିବେ—ମୁଁ ଶୁଣି ନାହିଁ ! ସେ ପ୍ରତିଭାଶାଳୀ ପଣ୍ଡିତ ଥିଲେ । ସଂସ୍କାର, ସାହିତ୍ୟ, ରାଜନୀତି, ପରିବାର-ନୀତି, ଗ୍ରାମନୀତି, ଅର୍ଥନୀତି, କୃଷିନୀତି ପ୍ରଭୃତି ଉପରେ ତାଙ୍କର ବହୁତ ଜ୍ଞାନ ଥିଲା । ଶ୍ରୀ ଗୋବିନ୍ଦ ପଟ୍ଟନାୟକ ଓ ସେ ଏସେମ୍ବ୍ଲିରେ ଭଲ ଜ୍ଞାନ ବୁଦ୍ଧିଯୁକ୍ତ ଭାଷଣ ଦେଉଥିଲେ । ସେ ସରକାରୀ କୂଟନୀତି ଯେତିକି ବୁଝୁଥିଲେ ସବୁ ଦାଣ୍ଡରେ ପକାଉଥିଲେ ।

ଶ୍ରୀ ଗୋବିନ୍ଦ ପଟ୍ଟନାୟକଙ୍କ ଏସେମ୍ବ୍ଲି ଭାଷଣରେ ପାଣ୍ଡିତ୍ୟ, ବିଚାର, ସାହସିକତା, ନିର୍ଭିକତା ଓ ଉଗ୍ରତା ଥାଏ ବୋଲି ଭାଷଣରେ କଣ୍ଟା ସରକାର ପକ୍ଷକୁ ଓ ମନ୍ତ୍ରିଙ୍କୁ ବାଧୁଥିଲା । ମାତ୍ର ଶ୍ରୀ ବ୍ରଜସୁନ୍ଦର ବାବୁଙ୍କ ଭାଷଣରେ ଯଥେଷ୍ଟ ଉଷ୍ମା ଥିଲେ ମଧ୍ୟ କାହାକୁ ବିନ୍ଧିଲାଭଳି କଣ୍ଟା ନ ଥାଏ । ସେଥିପାଇଁ ସେ ସରକାରୀ ପକ୍ଷ ସଭ୍ୟ ଓ ମନ୍ତ୍ରି-ମାନଙ୍କର ମଧ୍ୟ ବଡ଼ ପ୍ରିୟ ଥିଲେ ଓ ସବୁ ଶ୍ରେଣୀ ଲୋକଙ୍କ ଭକ୍ତିଶ୍ରଦ୍ଧା ପାଉଥିଲେ ।

ଏସେମ୍ବ୍ଲିରେ ମୋର ବିଲ୍, ପ୍ରସ୍ତାବଗୁଡ଼ିକ ଯାହା ମୁଁ ଆଗତ କରେ, ତାକୁ ମନ୍ତ୍ରିମାନେ ମୋ' ଉପରେ ଚାପ ପକାଇ ପ୍ରତ୍ୟାହାର କରୁଥିବାର ପରଂପରା ସୃଷ୍ଟି ହେବା ଦେଖି ବ୍ରଜସୁନ୍ଦର ବାବୁ ବଡ଼ ଦୁଃଖିତ ହେଉଥିଲେ ।

ଓଡ଼ିଶାର କୃତୀସନ୍ତାନ ବ୍ରଜସୁନ୍ଦର ଅକାଳରେ ଆମକୁ ଛାଡ଼ି ଚାଲିଗଲେ । ଦେଶ ତାଙ୍କଠୁଁ ଯାହା ଆଶା କରିଥିଲା ତାଙ୍କଠୁଁ ବହୁଗୁଣ ପାଇଛି । ମଧୁସୂଦନଙ୍କର କାଳ ହେଲା ପରେ ଯେପରି ଟାଉନହଲ୍‌ରେ ଶୋକସଭା ସ୍ମୃତିରକ୍ଷା କମିଟୀ ଓ ଚାନ୍ଦା ଅସୁଲ କମିଟୀ ଗଠନ ଆଦି କରାହୁଏ, ବ୍ରଜସୁନ୍ଦର ବାବୁଙ୍କ ମୃତ୍ୟୁ ପରେ ସେ ସବୁ କାମର ସୃଷ୍ଟି ହୋଇ ନ ଥିଲା । କିନ୍ତୁ ଆମ ଦେଶରେ ଜାତୀୟ ଚରିତ ଓ ଜାତୀୟଭାବ ଦେଶ-ବାସୀଙ୍କୁ ଉଦ୍‌ବୁଦ୍ଧ କରିପାରି ନ ଥିବାରୁ ବ୍ରଜସୁନ୍ଦର ସ୍ମୃତି କମିଟୀ ପସର ପାଡିଲା । ତାଙ୍କର ସ୍ମୃତି ବି ରହିଲା ନାହିଁ—ଏ ଜାତି କାହାର ସ୍ମୃତି ରଖେ ନାହିଁ !

ବ୍ରଜସୁନ୍ଦର ଦାସ ଜମିଦାରୀ ଚାଲନା କରି ପାରିବେ ନାହିଁ ବୋଲି ସରକାରଙ୍କୁ ଦରଖାସ୍ତ ଦେଇ ସରକାର ଜମାରେ ନିଜ ସଂପତ୍ତି ଦେଇ ନିଜେ ଯେତେବେଳେ ସଂସାରର ଅବସ୍ଥା ଚକ୍ରରେ ଓ କର୍ମ ବିପାକର ବିଡ଼ମ୍ବନାରେ ପଡ଼ି ସରକାରୀ ଚାକିରୀ କଲେ, ସେତେବେଳକୁ ଅସଲ ବ୍ରଜସୁନ୍ଦରଙ୍କର ମୃତ୍ୟୁ ଘଟିଥିଲା । ମାତ୍ର ନକଲ ବ୍ରଜସୁନ୍ଦରଙ୍କର ପ୍ରେତାତ୍ମା ସରକାରୀ ଚାକିରୀ କରି ଘୂରି ବୁଲୁଥିଲା ! ସୁତରାଂ ତାଙ୍କ ସ୍ମୃତି ଦେଶବାସୀ ରଖନ୍ତେ କିପରି ଓ କାହିଁକି ? ଦେଶ ସେବା କରି ଫକୀର ହୋଇ ପ୍ରକୃତ ମହତ୍ତ୍ୱଲୋକ ଦେଶପ୍ରତି କର୍ତ୍ତବ୍ୟ କରି ଶେଷରେ ଦେଶ-ବାସୀ ଓ ନିଜର ଉପକୃତ ଆତ୍ମୀୟ ସ୍ୱଜନଙ୍କ ଠାରୁ ଅନାଦର କୃତଘ୍ନତା ପାଏ । ବ୍ରଜବାବୁ ଦୁନିଆରୁ କିଛି ଚାହିଁ ନାହାନ୍ତି । ସେ ସମସ୍ତଙ୍କୁ ଦେଇଛନ୍ତି । ଗୀତାର ନିଷ୍କାମ କର୍ମଯୋଗୀଙ୍କ ଭଳି ଦେଶପାଇଁ ସେ ଫକୀର ହୋଇଥିଲେ । ଶେଷରେ ଜୀବନ ଦେଲେ । କିନ୍ତୁ ଏ ଦେଶ ତାଙ୍କ ପ୍ରତି କୃତଜ୍ଞତା ଦେଖାଇ ନାହିଁ । କାରଣ ସେ ଥିଲେ ସ୍ୱାଧୀନ, ଚେଷ୍ଟା, ଯଦିଓ ଅବସ୍ଥାରେ ପଡ଼ି ପାରିଲା ରଜା ଯାଚିଥିବା ସରକାରୀ ଚାକିରୀ କରିଥିଲେ । ଚାକିରୀକୁ ସେ ବଡ଼ ମନେ କରିଥିଲେ ଦୁରବସ୍ଥାରେ ପଡ଼ି ସଂସାର ପାଇଁ । ମାତ୍ର ଆରାମ ପାଇଁ ସେ ବ୍ୟକ୍ତିତ୍ୱ ଓ ବିବେକ ବିକିବାକୁ ବଡ଼ ଘୃଣା କରୁଥିଲେ ।

ଯେତେବେଳେ ତାଙ୍କର ଧନ ସମ୍ପଦ ସରି ଆସିଥିଲା । ସେ କରଜ ଶୁଝିବା ପାଇଁ ସରକାରୀ କୋର୍ଟ ଅଫ୍ ୱାର୍ଡ଼ସକୁ ସମ୍ପତ୍ତି ଜିମା କରି ଦେଇଥିଲେ । ୭୦ ହଜାର ଟଙ୍କା କରଜ ସେ ଶୁଝି ପାରିବା ଲୋକ,

ମାତ୍ର ଯୁଝି ପାରିଲେ ନାହିଁ । ସେତେବେଳକୁ ତାଙ୍କର ଆତ୍ମବିଶ୍ୱାସ ନିଜଠୁଁ ସରି ଯାଇଥିଲା । ସେ ରାଜନୀତିକ ଜୀବନ କରି ଦେଶ ସେବା କରିବା ଜୀବନ ବରଣ କରି ନଥିଲେ ୭୦ ହଜାର ଟଙ୍କା କରଜ କରି ସରକାର ପାଖେ ଶରଣ ପଶିବାର ଦୁର୍ଭାଗ୍ୟ ତାଙ୍କର ହୋଇ ନ ଥାନ୍ତା । ଦେଶ ସେବା ଜୀବନ ଧାରଣ କରିବାକୁ ଯାଇ ସେ ସର୍ବସ୍ୱାନ୍ତ ହୋଇଛନ୍ତି । ସେ ବଡ଼ ବେହିସାବୀ ଅମିତବ୍ୟୟୀ ବ୍ୟକ୍ତି ଥିଲେ । ତାଙ୍କର ସାଧାରଣ ସ୍ତର ମନୁଷ୍ୟର ସ୍ୱାଭାବିକ କ୍ଷୁଦ୍ରତା ଆଦୌ ନ ଥିଲା । କିନ୍ତୁ ସେ କ୍ଷୁଦ୍ର ନ ହୋଇ ବୃହତ୍ ହେଲେ ବି ସଂସାରର ପରିବର୍ତ୍ତନ ତାଙ୍କ ପାଇଁ ଅପେକ୍ଷା କରନ୍ତା ନାହିଁ । ବ୍ରଜବାବୁଙ୍କୁ ସରକାରୀ ପଇସାରେ ବାନ୍ଧିବାକୁ ହେଲା । ଏହି ପରିବର୍ତ୍ତିତ ପରିସ୍ଥିତିର ଠେଲାପେଲାରେ ସେ ହଇରାଣ ହେଇଗଲେ । ନିଜକୁ ପରିବର୍ତ୍ତନ ମୁଖରେ ଠିଆ କରିବା ପାଇଁ ଗୋଡ଼ରେ ତାଙ୍କର ତାକତ୍ ନଥିଲା, ସେ ଚିନ୍ତିତ ହେଲେ. ଭବିଷ୍ୟତର ନଗ୍ନ ବିଭୀଷିକାର ବିକଟ ରାକ୍ଷସର କବନ୍ଧ ତାଙ୍କ ସାମନାରେ ନାଚିଲା । ସେ ନିଜକୁ ସମ୍ଭାଳି ନ ପାରି ଢଳି ପଡ଼ିଲେ--ଅବେଳରେ ।

୧୯୪୪ ସାଲ ଯାଇ ଆଜି ୧୯୬୨ ସାଲ ହେଲା । ଏବେ ଉତ୍କଳ ସାହିତ୍ୟ ସମାଜ ଉଦ୍ୟମରେ ଓଡ଼ିଶାର ଜଣେ ମହତ ଉଦାର ନିଷ୍ଠାବାନ ଦେଶସାଧକବ୍ୟକ୍ତିଙ୍କର ସ୍ମରଣିକା ବହି ଛପା ଯାଇପାରିଲା ।



# ପରିବାରରେ ମୋ ପିତାଙ୍କ ସ୍ମୃତି *

ଶ୍ରୀମତୀ ପୁଣ୍ୟପ୍ରଭା ଦାସ

ଆଜି ମୋ ପକ୍ଷରେ ଆନନ୍ଦର ଦିନ ଯେପରି, ଦୁଃଖର ଦିନ ମଧ୍ୟ ସେହିପରି । ଏ ଉତ୍ସବରେ ସ୍ୱର୍ଗତ ପିତାଙ୍କର ତୈଳଚିତ୍ର ସମ୍ମୁଖରେ ଦେଖି ଯେତିକି ଆନନ୍ଦ ଆସେ, ତା ମଧ୍ୟ ଦେଇ ଭାବନା ଅତୀତକୁ ଫେରିଗଲେ ସେତିକି ଦୁଃଖ ଆସେ । ଅତୀତ—ସେ ସୁଦୂର ଅତୀତର ଅନୁଭୂତି ।

ବାପାଙ୍କ ପାଖରେ ଆମେ ସବୁ ଭାଇ ଭଉଣୀ ଯେତେବେଳେ ସାନ ସାନ । ସେ ଅନେକ ସମୟରେ ଆମକୁ ତାଙ୍କ ଜୀବନର ଅନୁଭୂତି କହି ବସନ୍ତି । କଥାରେ କଥାରେ ତାଙ୍କର ମତ, ଜୀବନରେ ସଂସ୍କୃତି ଆଉ ପରମ୍ପରା ଗୋଟାଏ ବଡ଼ ଜିନିଷ; ଶିକ୍ଷା ଲଭ କରି, ଉଚ୍ଚ ଶିକ୍ଷିତ ହୋଇ ମଧ୍ୟ ଲୋକ ସଂସ୍କୃତିର ମର୍ଯ୍ୟାଦାକୁ ଉପେକ୍ଷା କରି ପାରିବ ନାହିଁ—ଏଇ ଥିଲା ତାଙ୍କର ଗୋଟାଏ ବଦ୍ଧମୂଳ ଧାରଣା ।

କାଲି ପରି ମନେ ହେଉଛି, ତାଙ୍କ ପାଖରେ ଆମେ ସବୁ ଘେରି କରି ବସିଥାଉଁ । ସେ କହନ୍ତି ତାଙ୍କ ପିଲାଦିନର କଥା—

ତାଙ୍କ ମା ଅର୍ଥାତ୍ ଆମ ଗୋସେଇଁ ମା ତ ସଂସାର ଛାଡ଼ି ଗଲେ ବାପା ଯେତେବେଳେ ଖୁବ୍ କମ୍ ବୟସର । ନିହାତି ବେଶୀ ହେଲେ ।

* ଉତ୍କଳ ସାହିତ୍ୟ ସମାଜ ପକ୍ଷରୁ ଶ୍ରୀରାମଚନ୍ଦ୍ର ଭବନରେ ବ୍ରଜସୁନ୍ଦର ପ୍ରତିକୃତି ଉନ୍ମୋଚନ ଉପଲକ୍ଷେ ଅନୁଷ୍ଠିତ ସଭାରେ ପଠିତ ।

ଠିକ୍ ମୋର ମନେ ହେଉନାହିଁ, ସେତେବେଳେ ବାପାଙ୍କୁ ହୋଇଥିବ କେଜାଣି ୭ କି ୮ ବର୍ଷ । ସେଇ ପିଲାଦିନର କଥା—ବାପା କହନ୍ତି-- ଥରେ ସେ ଚୁଲି ମୁଣ୍ଡରେ ବସି କାଉଁଶିଆ କାଠିର ଗୋଟିଏ ପାଖ ନିଆଁରେ ଲଗାଇ, ଆଉ ପାଖଟା ତାଙ୍କ ମୁହଁରେ ଦେବାକୁ ଯାଉଛନ୍ତି-ଆସି ପହଞ୍ଚି ଗଲେ ମା—ତାପରେ ତାଙ୍କ ଉପରେ ଆରମ୍ଭ ହେଲା ଗାଳି—"ଏତିକି ବେଳୁ ବଡ ସିଗାରେଟ ଖାଇଲଣି—ଟଙ୍କେଇ ଅଫିମ ଖାଇବ ।" ଏମିତି କେତେ କ'ଣ କଥା । ଠିକ୍ ସେମିତି ଦିନୁଁ ପରି ମାଙ୍କ କଥାକୁ ମାନିଥିଲେ । ସେଇଦିନୁ ତାଙ୍କ ପାଟିରୁ ଆଉ ଧୂଆଁ ବାହାରି-ବାର ସୁଯୋଗ ଘଟିଲା ନାହିଁ । ବାପା ରକ୍ଷଣଶୀଳ ନଥିଲେ— କେବେ ତ ଆମ ଉପରେ ରାଗିବା କି ମାରିଧରି କରିବା ମୋର ମନେ ହେଉନାହିଁ । ସେ ସବୁବେଳେ ଅଭିମାନ କରି ଛୁଲେଇ ଛୁଲେଇ ଏମିତି ସବୁ କଥା କଥାକେ ଆମକୁ ଉପଦେଶ ଦିଅନ୍ତି—

ଆଉ ଗୋଟିଏ କଥା ଆଜି ମୋର ମନେ ପଡ଼ୁଛି । ସେମିତି ସେଇ ବାପାଙ୍କ ମୁହଁରୁ ଶୁଣିଲା କଥା । ସେତେବେଳେ ବାପାଙ୍କୁ ହେଇଥିବ କେଜାଣି ପାଞ୍ଚ କି ଛଅ ବର୍ଷ—ଗୋସେଇଁ ମା ତ ବାପାଙ୍କୁ ହାତେଉ-ହାତେଉ କରି କରି ଥାନ୍ତି—କଥା କଥାକେ ତାଙ୍କୁ ଅକଟ କରନ୍ତି । ଥରେ, ବାପା କହୁଥିଲେ, ଘରକୁ ଧାନ କୁଟେଇକୁଣି ଆସିଥିଲେ, ସେମାନଙ୍କ ଭିତରେ ଯେମିତି କଥା କଥାକେ କଳି ଗୋଳ ଲଗେ, ଥରେ କ'ଣ ହେଲାନା, ସେମାନେ କଥା ଭାଷାରେ ନିହାତି ଅଭଦ୍ର ଭାଷା ବ୍ୟବହାର କଲେ । କାଳେ ଏଇ ଭାଷା ବାପାଙ୍କ ଉପରେ କ'ଣ ପ୍ରଭାବ ପକାଇବ, ସେଥିଲାଗି, ଗୋସେଇଁ ମା ସାଙ୍ଗେ ସାଙ୍ଗେ ସେ କୁଟେଇଭୁଣୀଙ୍କୁ ବାହାର କରିଦେଲେ । ଗୋସେଇଁ ମାଙ୍କର ତ ଏକବାଟରେ କଡ଼ା ଆଦେଶ—ତାଙ୍କର ସେଇ କଥା ପଦକରେ କୁଟେଇଭୁଣୀକୁ ବାହାର କରି ଦିଆଗଲା । ଆଉ ଦଳେ ନୂଆ ଆସିଲେ । ବାପା ପରି ସବୁବେଳେ କହନ୍ତି, କ'ଣ ଥିଲା ବା ଗୋସେଇଁ ମାଙ୍କର ଶିକ୍ଷା—ଆଜି ସେ କୋଉଦିନରୁ ଗୁଲିଗଲେଣି— ହେଲେ ଏବେ ଗୋସେଇଁ ମାଙ୍କର ଆଦର୍ଶ ଭାବିବସିଲେ ଗର୍ବଆସେ । ଏଇ ଆଦର୍ଶ ଆମ ଉପରେ ପକେଇବାକୁ ବାପା ସବୁବେଳେ ଇଚ୍ଛା କରୁଥିଲେ ।

ବାପା ବଡ଼ ନିଷ୍ଠାପର ଥିଲେ । ବିଦେଶୀ ଜିନିଷ ବ୍ୟବହାର କରିବା ପ୍ରତି ତାଙ୍କର ଅଦୌ ଆଗ୍ରହ ନଥିଲା । ବଜାରରୁ ଜିନିଷ କଣା ହୋଇ ଆସିଲେ ସେ ଆଗ ପଚାରୁଥିଲେ କୋଉଠାରେ ତିଆରି ! ଏତିକି ଏହିଗରେ ସେ ନିଷ୍ଠାପର ଥିଲେ ! ଆଜି ଆପଣ ମାନଙ୍କୁ ଶୁଣିଲେ ହୁଏତ ଆଶ୍ଚର୍ଯ୍ୟ ଲଗିବ—ସେ ବିଦେଶୀ ତିଆରି "ଓଭଲ୍‌ଟିନ୍" ବି ଖାଉ ନ ଥିଲେ । ମୋର ଆଜି ଏକଥା ସ୍ପଷ୍ଟ ମନେ ଅଛି । ଏଇ ଭିତରେ ତାଙ୍କର ଅନ୍ତିମ ଶଯ୍ୟାର ଗୋଟିଏ କଥା ଆଜି ମନେ ପଡୁଛି । ସେତେ-ବେଳକୁ ପ୍ରାୟ ଆମେ ସବୁ ଆଶାଶୂନ୍ୟ ହୋଇ ବସିଲୁଣି । ତଥାପି ଚିକିତ୍ସା ତ ଚାଲିବ । ଡାକ୍ତରଙ୍କର ଚିକିତ୍ସା—ଥରେ ଏଥିଲାଗି ତାଙ୍କୁ ବ୍ରାଣ୍ଡି ଦେବାକୁ ପଡ଼ିଲା—ସେତେବେଳର ସେଇ ମୃତ୍ୟୁର ଷୀଣ କଣ୍ଠର ତାଙ୍କର କଥା ମୋର ମନେ ପଡ଼ୁଛି—ସେ ମୁହୂର୍ତ୍ତରେ ବି ସେ ଏଇ ବାଣ୍ଡି ଦିଆଗଲାବେଳେ କହି ଉଠିଲେ, "ଆଜ ଏ ସମୟରେ ଏସବୁ କାହିଁକି ଦିଉଚ ମା ?" ଏଇ କଥା ତାଙ୍କର ଆଜି ଯେମିତି ମୋ କାନରେ ପ୍ରତ୍ୟକ୍ଷ ସ୍ୱର ଭଳିରେ ଆସୁଛି—କେତେ ଶକ୍ତ ସେ ଆଦେଶ ମିଶା ଅନୁରୋଧ ! ଏଇ ଭଳି ଥିଲେ ସେ ନିଷ୍ଠାପର—ଏଇ ନିଷ୍ଠା ଭିତରେ ତାଙ୍କର ଜୀବନ ବିତିଥିଲା—

କେତେ କଥା ଭାବି ଆସିଲେ, ଆଜି-ମନରେ ଆସେ । ସେ ଥିଲେ ବଡ଼ ସ୍ୱାବଲମ୍ବୀ—ସ୍ୱାବଲମ୍ବନଶୀଳ ତାଙ୍କ ଜୀବନର ମୂଳମନ୍ତ୍ର ଥିଲା । ଆପେ ଖଟି ଖାଇବା ନୀତି ସେ ଭଲରୂପେ ବୁଝିଥିଲେ ଆଉ ଏଇ ମର୍ମ ସେ ଆମକୁ ବରାବର ବୁଝାଉଥିଲେ । ନିଜ କାମ କରିବା ଲାଗି ସେ କେବେ ପରମୁଖାପେକ୍ଷୀ ହୋଇ ବସି ନାହାନ୍ତି । କେବେ ସେ ଆଉ ଜଣଙ୍କୁ ଅନେଇ ରହି ନାହାନ୍ତି । ଏ ଗୋଟିଏ ବଡ଼ ଆଦର୍ଶ ତାଙ୍କର, ଯାହାକି ସେତେବେଳେ ପାରିବାରିକ ଜୀବନରେ ଆମମାନଙ୍କୁ ବଡ଼ ବିସ୍ମିତ କରିଥିଲା ।

ଶରୀରର ବଳକୁ ଆଉ ଶ୍ରମ ଦାନକୁ ସେ ଖୁବ୍ ବଡ ଆସନ ଦେଇଥିଲେ । ସେଥିଲାଗି ସେ ଜମିଦାରୀରୁ ବେଠି ପ୍ରଥା ଉଠାଇ ଦେଇଥିଲେ । ଶ୍ରମ ବିନିମୟରେ ଉପାର୍ଜନ କରିବା ନୀତିକୁ ସେ ଚିହ୍ନିଥିଲେ । ସେଥିଲାଗି ବେଠି ପ୍ରଥା ଦେଖି ତାଙ୍କ ଦେହ ସହିଲା

ନାହିଁ—ସେ ବେଟି ଉଠାଇ ଦେଇ ପକ୍ଷୀମାନଙ୍କୁ ଶ୍ରମର ମୂଲ୍ୟ ବାନ୍ଧିବାକୁ ଅନୁପ୍ରାଣିତ କରିଥିଲେ ।

ବାପା ଥିଲେ ବଡ଼ ଧର୍ମ ଭୀରୁ—ଏଥି ଧର୍ମର ମର୍ଯ୍ୟାଦା ଈଶ୍ୱରଙ୍କର ବୈଶିଷ୍ଟ୍ୟ ବେଶ୍ ଉପଲବ୍ଧି କରିଥିଲେ । ସେ ତ ସବୁବେଳେ ସାତ୍ତ୍ୱିକ୍ୟ ଚର୍ଚ୍ଚା କରନ୍ତି । ସାତ୍ତ୍ୱିକ ସାହିତ୍ୟ ପ୍ରତି ତାଙ୍କର ଗଭୀର ଅନୁରାଗ ଥିଲା । ଗୀତା ସେ ନିଜେ ପଢ଼ୁଥିଲେ, ଚର୍ଚ୍ଚା କରୁଥିଲେ । ଆମେ ସବୁ ବାପାଙ୍କର ଏଇକଥା ଦେଖି ଦେଖି ମଝିରେ ମଝିରେ ଗୀତା ପଢ଼ିବାକୁ ମନ ବଳାଉଥିଲୁ । ଆଜି ମୋର ମନେ ପଡ଼ୁଛି, ଥରେ ମୁଁ ଗୀତା ପୋଥି ଖଣ୍ଡେ ଖୋଲି ଧରି ବସିଥାଏ—ଅର୍ଥ ବୁଝି ନ ପାରିବାରୁ ବାପାଙ୍କୁ ପଚାରିଥିଲି । ବାପା ଉତ୍ତର ଦେଲେ, "ତୁ ନିଜେ ନିଜେ ଗୀତା ପଢ଼ ମା—ମନ ଧ୍ୟାନ ଦେଇ ଗୀତା ପଢ଼ିଲେ, ତୁ ଆପେ ଆପେ ଗୀତାର ମର୍ମ ବୁଝି ପାରିବୁ—ଗୀତା ମଧ୍ୟରେ ସ୍ୱୟଂ ଭଗବାନ୍‌ଙ୍କୁ ଉପଲବ୍ଧି କରି ପାରିବୁ ।" ଏମିତି ଥିଲା ତାଙ୍କର କଥାବାର୍ତ୍ତା ଶୁଣିଲଣି—ଠେକ୍ ଠୋକ୍ କଥାରେ ଏମିତି ସେ ଆମକୁ ଶିକ୍ଷା ଦିଅନ୍ତି—

ଏ ସବୁ ଅନୁଭୂତି ଭିତରେ ଆଉ ଗୋଟାଏ କଥା ମୋ ମନେ ପଡ଼ୁଛି—ସେ ଖାଉଥିଲେ ଯେପରି, ଶୁଣାଉଥିଲେ ସେଇପରି—ଅତିଥି ଅଭ୍ୟାଗତ ତାଙ୍କ ପାଖରୁ ଫେରିଯିବାର ମୋର ମନେ ନାହିଁ । ସାନ ସାନ ପିଲାମାନଙ୍କ ସହ ଆନନ୍ଦ ଉପଭୋଗ କରି ସେମାନଙ୍କୁ ଖାଇବା ପିଇବାକୁ ଦେବାରେ ତାଙ୍କର ଥିଲା ଗୋଟାଏ ବିପୁଳ ଆନନ୍ଦ—ଆମେ ତ ସହଜେ ଘରପିଲା—ପରପିଲାଙ୍କୁ ସେ ଦେଖିଲେ ମୁହୂର୍ତ୍ତକରେ ଚୋଡ଼ା-ମୁଢ଼ି ଆପଣାର କରି ପକାନ୍ତି—କେହି ଖାଇବାକୁ ଆସିଗଲେ ସେ ଦିନ ଆମ ଘରେ ଆନନ୍ଦ ଆଉ ଉତ୍ସାହ କହିଲେ ନ ସରେ । ବହୁତ ପ୍ରକାରର ଖାଇବା ଜିନିଷ ତିଆରି ହେବ—ଏସବୁ ଯେତେ ହେଲେବି ବାପା ସନ୍ତୁଷ୍ଟ ହେବେ ନାହିଁ । ଏମିତି ଆଖି ଥିଲା ତାଙ୍କର—କିଛି କମ୍ ହବ ନାହିଁ—କିଛି ନଷ୍ଟ ହେବ ନାହିଁ । କୌଣସି କଥାରେ ଅପୂର୍ଣ୍ଣତା ରହିବ ନାହିଁ । ସବୁଥିରେ ଯେମିତି ସମ୍ପୂର୍ଣ୍ଣତା—ସଫଳତା ଲାଗି ତାଙ୍କର ପ୍ରୟାସ—ଖାଦ୍ୟ ପଦାର୍ଥରେ ସେମିତି ଗୋଟାଏ ପୂର୍ଣ୍ଣତା ଆଉ ବିପୁଳତାର ଅନୁଭୂତି ନ ଆସିଲେ, ସତେ ଯେପରି ତାଙ୍କୁ ଆଦୌ ସନ୍ତୁଷ୍ଟ ଲାଗେ ନାହିଁ । କେହି ତାଙ୍କ ପାଖକୁ ଆସିଲେ ନ ଖାଇ ଫେରି

ଯାତ୍ରିନ ହିଁ ଯେପରି, ଖାଇ ବସିଲେ କ'ଣ ତାଙ୍କର ଅନୁଭୂତ ହେଉଥିବ କେଜାଣି—ହେଲେ ଆମେ ଅନୁଭବ କରୁ—ବାପା ଯେମିତି ଖାଇବାକୁ ଦବାରେ ତତ୍ପର ହୋଇ ପଡ଼ୁଛନ୍ତି—ନିଜେ ରାନ୍ଧି ଖୁଆଉଥିଲେ ଓ ନିରାମିଷଭୋଜୀ ହୋଇ ମଧ୍ୟ ନାନା ପ୍ରକାର ଆମିଷର ଉପାଦେୟ ତରକାରୀ ତିଆରି କରୁଥିଲେ ।

ବଡ଼ ସରଳ ଆଉ ନିରାଡ଼ମ୍ବର ଜୀବନ ଥିଲା ବାପାଙ୍କର—ସେ ପରିଶ୍ରମର ମୂଲ୍ୟ ଯେମିତି ବୁଝିଥିଲେ, ଅପ୍ରସ୍ତ ବଳାଏର ଅପକାରିତା ବି ସେତେ ଯେମିତି ସେଇ ପରିମାଣରେ ଉପଲବ୍ଧି କରି ପାରୁଥିଲେ । ଚାଲିଚଳଣି, ପୋଷାକ ପରି କୌଣସିଥିରେ ତ ତାଙ୍କର ଆଡ଼ମ୍ବର ନଥିଲା । ଯଦି ଦୈନନ୍ଦିନ ଜୀବନ ପର୍ଯ୍ୟାୟରେ କିଛି ଆଡ଼ମ୍ବର ଥିଲା, ସେ ବୋଧହୁଏ ତାଙ୍କର "ପାନ ଖିଆ"ରେ । ପାନ ସେ ଖାଉଥିଲେ—ଆଉ ଏଇ ପାନଛଡ଼ା ବୋଧହୁଏ ତାଙ୍କର ଅନ୍ୟ କେଉଁଥିପ୍ରତି ଅପ୍ରସ୍ତ ଥିଲା ବୋଲି କହି ହେଉନାହିଁ । ଆଉ ସେ ଯେପରି ନିଷ୍ଠାପର ଥିଲେ, ଯଦି ପାନ ବିଦେଶରୁ ଆସୁଥାନ୍ତା, ତାହେଲେ ସେ ପାନ ବି ଜୀବନରେ ଖାଇଥା'ନ୍ତେ କି ନା ସନ୍ଦେହ—ତେବେ ଦୁର୍ଗୁଣ ହେଉ ସଗୁଣ ହେଉ, ବିଳାସ ହେଉ, ବ୍ୟସନ ହେଉ, ଯାହା ସେ ହେଉ, ବାପାଙ୍କର 'ପାନଖିଆ'' ଭିତରେ ହିଁ ହିଁ ସେ ଆବଦ୍ଧ ଥିଲା । ମୋ'ର ମନେ ହେଉଛି, ଆମ ମାଟିର ଅତିଥି-ଅଭ୍ୟାଗତ ଚରିଁ ଲାଗି 'ପାନ ଦିଆ' ଯେମିତି ଗୋଟାଏ ସଂସ୍କୃତିର ପରମ୍ପରା ଭିତରେ ମିଶିଯାଇଛି, ଆଉ ଏଇ ଜାତୀୟ ସଂସ୍କୃତି ଯେମିତି ବାପାଙ୍କ ଉପରେ ବେଶ୍ ଗୋଟାଏ ପ୍ରଭାବ ପକାଉଥିଲା—ସେ ପାନ ଖାଉଥିଲେ ଯେମିତି—ଅତିଥି ସତ୍କାରରେ ପାନ ଖୁଆଉଥିଲେ ବି ସେମିତି—

ବାପାଙ୍କ ଅମଳର ତାଙ୍କ ସାଙ୍ଗେ ଯିଏ ମିଳାମିଶା କରୁଥିଲେ, ସେଇମାନଙ୍କ ଭିତରୁ ହୁଏତ କାହାର କାହାର ମନେଥିବ, ମୋ'ର କିନ୍ତୁ ସ୍ପଷ୍ଟ ମନେଅଛି, ବାପା ବଡ଼ ଆତ୍ମନିର୍ଭରଶୀଳ ଥିଲେ—ଏତେ ବେଶୀ ଯେ—ଖାଇବା ପିଇବା ଚାଲିବା ବୁଲିବା କଥା ଛାଡ଼—ବେରାମ୍ ହେଲେ, ଡାକ୍ତର କମ୍ବା ଡାକ୍ତରି ଔଷଧ ଉପରେ ବେଶୀ ନିର୍ଭର କରିବା ଲୋକ ସେ ନଥିଲେ । ନିଜେ ସେ କବିରାଜ ନଥିଲେ ସତ, ହେଲେ କବିରାଜି ଔଷଧ ଦିଆ ନିଆ କରୁଥିଲେ । ନିଜେ ବି ହୋମିଓପାଥି ବହି ପଢ଼ି ଔଷଧ ଦିଆଦେଇ କରୁଥିଲେ—ଏଥିରେ ସେ

ତାଙ୍କର ବିଶେଷ ପାରଦର୍ଶିତା ଥିଲା, ତା ବଢ଼େଇ କରି କହି ପାରିବି ନାହିଁ, ହେଲେ ଏମିତି କେତୋଟି ଛୋଟ ଛୋଟ କଥାରୁ ତାଙ୍କର ଆତ୍ମନିର୍ଭର-ଶୀଳତା କଥା ମନେ ପଡ଼େ—ନିଜେ ତ ନିରାମିଷାଶୀ ଥିଲେ, ସେଥିଲାଗି ଡାକ୍ତରୀ ଔଷଧ କଦବା କ୍ୱଚିତ୍ ତାଙ୍କୁ ଖାଇବାକୁ ଦିଆଗଲେ ସେ ଆଗ ଡାକ୍ତରଙ୍କ ପ୍ରେସ୍କ୍ରିପ୍ସନ ବା ବ୍ୟବସ୍ଥାପତ୍ର ପଢ଼ୁଥିଲେ । ପ୍ରଥମେ ସନ୍ତୁଷ୍ଟ ହେଉଥିଲେ ଯେ, ତହିଁରେ କୌଣସି ଆମିଷଜାତ ଦ୍ରବ୍ୟର ମିଶ୍ରଣ ନାହିଁ—ତାପରେ ସେ ଯାଇଁ ଔଷଧ ଗ୍ରହଣ କରୁଥିଲେ—

ଏହାପରେ ତାଙ୍କର ନିଷ୍ଠାପର ସ୍ୱଭାବ, ନିରାଡ଼ମ୍ବର ଚାଲିଚଳଣ, ଆତ୍ମ ନିର୍ଭରଶୀଳତା, ଧର୍ମଜ୍ଞାନ, ସାହିତ୍ୟଚର୍ଚ୍ଚା ସ୍ପଷ୍ଟବାଦିତା—ଏ ସବୁ ଆମ ପରିବାରର ପ୍ରତ୍ୟେକଙ୍କ ଆଗରେ ଆଦର୍ଶ ହୋଇ ରହିଛି—ସବୁବେଳେ ଏଇସବୁ ଭିତରେ ବାପା ଆମର, ଆମ ଆଖିଆଗରେ ଦେଖାଦିଅନ୍ତି ।



# ନୀତିନିଷ୍ଠ ବ୍ରଜସୁନ୍ଦର

ଶ୍ରୀ ବିପିନ ବିହାରୀ ରାୟ

ଆନନ୍ଦର କଥା, 'ଉତ୍କଳ ସାହିତ୍ୟସମାଜ' ୰ବ୍ରଜସୁନ୍ଦର ଦାସଙ୍କର ଜୀବନୀ ପ୍ରକାଶ କରୁଛି । ଏ ସମ୍ପର୍କରେ ଅଳ୍ପ କିଛି ଲେଖା ଦେବାକୁ ମୋ ପ୍ରତି ଆହ୍ୱାନ ଆସିଛି । ଅନେକ ଯୋଗ୍ୟତର ବ୍ୟକ୍ତି ଲେଖା ଦେବେ । ତଥାପି ୰ବ୍ରଜସୁନ୍ଦରଙ୍କ ସହିତ ବହୁବର୍ଷ ଧରି ମୋର ଯେଉଁପରି ସମ୍ପର୍କ ଥିଲା, ସେହି ଦୃଷ୍ଟିରୁ ଏ କାର୍ଯ୍ୟ ମୋର କର୍ତ୍ତବ୍ୟ । କେବଳ କର୍ତ୍ତବ୍ୟ ନୁହେଁ, ତାଙ୍କ ପ୍ରତି ଉପଯୁକ୍ତ ଶ୍ରଦ୍ଧାଞ୍ଜଳି ଅର୍ପଣର ମଧ୍ୟ ସୁଯୋଗ । ବିଂଶ ଶତାବ୍ଦୀର ପ୍ରଥମ ଭାଗରୁ ଯେଉଁ କେତେଜଣ ପୁରୁଷ-ରତ୍ନ ବ୍ୟକ୍ତି ଉତ୍କଳର ଅଗ୍ରଗତି ପାଇଁ ଅଗ୍ରଣୀ ହୋଇ କାର୍ଯ୍ୟ କରିଥିଲେ, ବ୍ରଜସୁନ୍ଦର ସେମାନଙ୍କ ମଧ୍ୟରେ ଜଣେ ନିଷ୍ଠାବାନ କର୍ମୀ । ସେ ଯାହା ଯାହା କାର୍ଯ୍ୟ କରିଥିଲେ, ଯେଉଁ ପରିସ୍ଥିତିରେ ଯେତେ କାର୍ଯ୍ୟ କରିଥିଲେ, ସେଥିରେ କୌଣସି ସ୍ଥାନରେ କିଞ୍ଚିତ୍‌ମାତ୍ର ମଳିନତା ନଥିଲା । ଦେଶସେବା ଥିଲା ତାଙ୍କ ଜୀବନର ବ୍ରତ ।

ଯାଜପୁର ସବଡ଼ିଭିଜନର ଏକ ସମ୍ଭ୍ରାନ୍ତ ପରିବାରରେ ବ୍ରଜସୁନ୍ଦରଙ୍କର ଜନ୍ମ । ଜନ୍ମରୁ ସେ ବିସ୍ତୃତ ଭୂସମ୍ପତ୍ତିର ଅଧିକାରୀ ହୋଇଥିଲେ । ଏପରି ହୋଇଥିଲେହେଁ, ସମ୍ପଦର ମୋହ କି ଧନିକ ଶ୍ରେଣୀର ଭୋଗ ବିଳାସ ବ୍ୟସନ ତାଙ୍କ ଜୀବନକୁ ସ୍ପର୍ଶ କରିନଥିଲା । ସେ ଯେତେ ସମ୍ପଦର ଅଧିକାରୀ ମାଲିକାଂଶ ପାଇଥିଲେ, ନିଜର ବିଦ୍ୟାବୁଦ୍ଧିକୁ ସମ୍ପଦର

ପର୍ଯ୍ୟବେକ୍ଷଣରେ କିଛି ସମୟ ପାଇଁ ବି ନିଯୁକ୍ତ କରିଥିଲେ ଉକ୍ତ ସମ୍ପତ୍ତିକୁ ନିଜ ଜୀବନରେ ଦ୍ୱିଗୁଣିତ କରିପାରିଥାନ୍ତେ । ସେ ପିତାମାତାଙ୍କର ଏକମାତ୍ର ସନ୍ତାନ ଥିଲେ । ତେଣୁ ତାଙ୍କ ଉପରେ ପରିବାରରେ ଗୁରୁଦାୟିତ୍ୱ ନଥିଲା । ଏକ ପକ୍ଷରେ ସମ୍ପଦର ଆଧିକ୍ୟ, ଅନ୍ୟପକ୍ଷରେ ପାରିବାରିକ ଦାୟିତ୍ୱର ଅଲ୍ପତା ଧନ ସଂଚୟ ପ୍ରତି ଉପଯୁକ୍ତ କ୍ଷେତ୍ର ରହିଥିଲା । ସେ ଯେତେବେଳେ ମୁକୁର ପ୍ରେସ ସ୍ଥାପନ କରିଥିଲେ ସେତେବେଳେ ଓଡ଼ିଶାରେ ଛାପାଖାନାର ଅଭାବ ଥିଲା । କେବଳ ଛାପାଖାନାର ତତ୍ତ୍ୱାବଧାନ ଦ୍ୱାରା ମଧ୍ୟ ସେ ସମ୍ପଦ ବୃଦ୍ଧି କରି ପାରିଥାନ୍ତେ । କିନ୍ତୁ ଏ ଦିଗ ପ୍ରତି ଦୃଷ୍ଟି ନଦେଇ, ବରଂ ଧନ ସଞ୍ଚୟ ପ୍ରତି ଉଦାସୀନ ରହି ଯାହା ପାଉଥିଲେ, ତାହାକୁ ଦେଶର ରାଜନୀତି, ସଂସ୍କୃତି, ପ୍ରଗତି ଲକ୍ଷ୍ୟରେ ଅର୍ପଣ କରିଥିଲେ । ଏପରିକି 'ମୁକୁର' ପତ୍ରିକା ପ୍ରକାଶରେ ଅର୍ଥହାନି ଘଟୁଥିଲେ ମଧ୍ୟ ସେ କ୍ଷତି ସହ୍ୟ କରି ଉକ୍ତ ପତ୍ରିକାକୁ ବହୁବର୍ଷ ଧରି ଜୀବିତ ରଖି ପାରିଥିଲେ । ଅନାସକ୍ତି ତାଙ୍କ ଜୀବନରେ ଏତେ ପ୍ରବଳ ହୋଇଉଠିଲା ଯେ, ଜୀବନର ଶେଷଭାଗରେ ସେ ଋଣଗ୍ରସ୍ତ ହୋଇ ପଡ଼ିଥିଲେ । ରାଜନୀତି କ୍ଷେତ୍ରରେ ଓଡ଼ିଶା ଆସେମ୍ବ୍ଲିର ଓ ଉଲ୍ଲେଖରେ ସରକାରୀ ପକ୍ଷର ସଭ୍ୟଭାବରେ ଥାଇ ସେ ଦେଶସେବା କରିବା ସଙ୍ଗେ ସଙ୍ଗେ କିଛି ଉପାର୍ଜନ ମଧ୍ୟ କରିଥିଲେ । କିନ୍ତୁ ରାଜନୀତିକୁ ସେ ବ୍ୟବସାୟ କ୍ଷେତ୍ର ରୂପେ ବ୍ୟବହାର କରିନଥିଲେ ।

କଟକ ଚୌଧୁରୀବଜାର ସଂଲଗ୍ନ ୰ବ୍ରଜସୁନ୍ଦରଙ୍କ ଜାଉଁଳିଆପଟି ବାସ ଭବନରେ ଅନ୍ୟାନ୍ୟ କେତେକଙ୍କ ସହିତ ସ୍ୱାମୀ ବିଚିତ୍ରାନନ୍ଦ ଦାସ, ୰ ବିଶ୍ୱନାଥ କର, ୰ ବୀରକିଶୋର ବସୁ ଓ ମୁଁ ଅନେକ ସମୟରେ ଏକତ୍ର ହେଉଥିଲୁଁ । ଓଡ଼ିଶାର ଭବିଷ୍ୟତ ସମ୍ବନ୍ଧରେ ନାନା ବିଷୟରେ ଯେଉଁ ଆଲୋଚନା ହେଉଥିଲା, ସେ ଉତ୍ସାହ ଦେଉଥିଲେ । ପୁଣି ବର୍ଷକୁ ଅନ୍ତତଃ ଚାରି ପାଞ୍ଚଥର ସେ ସେହି ସ୍ଥାନରେ ଆମ୍ଭମାନଙ୍କୁ ଭୋଜିରେ ନିମନ୍ତ୍ରଣ କରୁଥିଲେ । ସେ ଥିଲେ ରନ୍ଧନ ପଟୁ । ନିଜେ ରନ୍ଧନ କରି ଆମ୍ଭମାନଙ୍କୁ ପରିବେଷଣ କରିବାରେ ସେ ଆନନ୍ଦ ପାଉଥିଲେ । କି ନିର୍ମଳ ଆନନ୍ଦ !! ବ୍ରଜସୁନ୍ଦରଙ୍କର ମନ ଯେପରି ଉଚ୍ଚ, ହୃଦୟ ସେପରି ଉଦାର । ରାଗ, ହିଂସା, ବାଦ, ବିବାଦ, ସଙ୍କୀର୍ଣ୍ଣତା, ଅହଙ୍କାର, ଅଭିମାନ—ଏସବୁ ଜୀବନ-କଳୁଷରୁ ସେ ମୁକ୍ତ ଥିଲେ । ନିଷ୍କଳଙ୍କ ଜୀବନର ଅଧିକାରୀ ହୋଇ ପୁଣି

ସାରା ଜୀବନ ଦେଶ ସେବାରେ ନିଯୁକ୍ତ ରଖି, ସେ ନିଜ ପ୍ରତି, ମଧ୍ୟ ବଂଶ ପ୍ରତି, ସମ୍ମାନ ଅର୍ଜନ କରି ପାରିଥିଲେ । ବଂଶର ଆଭିଜାତ୍ୟ ତାଙ୍କ ଜୀବନରେ ପରିସ୍ଫୁଟ ହୋଇଥିଲା । ସେ ଥିଲେ ଜଣେ ଅଜାତ ଶତ୍ରୁ ।

ପୂର୍ବଲିଖିତ ସ୍ଥାନରେ ଦିନେ ଆଲୋଚନା ପ୍ରସଙ୍ଗରେ "ତର୍କ ବିଜ୍ଞାନ" ଲେଖିବାକୁ ସେ ମୋତେ ନିର୍ଦ୍ଦେଶ ଦେଲେ । ପୁସ୍ତକ ଲେଖା ଶେଷ ହେବା ପରେ ଅଳ୍ପମାତ୍ର ଖର୍ଚ୍ଚ ନେଇ ଉକ୍ତ ପୁସ୍ତକକୁ ନିଜ ଛାପାଖାନାରେ ମୁଦ୍ରଣ କରାଇ ଦେଇଥିଲେ । ପୁଣି ମୋର ଅନ୍ୟପୁସ୍ତକ 'ପ୍ରବନ୍ଧ ସୋପାନ'ର ମୁଖବନ୍ଧ ଲେଖିବାରେ ମୁଁ ବ୍ରଜସୁନ୍ଦରଙ୍କ ନିକଟରେ ଋଣୀ । ମୁକୁର ପତ୍ରିକାର ସଂପାଦକ ରହି ମୁକୁର ପ୍ରେସରେ ଶିକ୍ଷାପ୍ରଦ ଅନେକ ଓଡ଼ିଆ ପୁସ୍ତକ ଛପାଇ ସଂସ୍କୃତି କ୍ଷେତ୍ରରେ ସେ ଯେପରି କାର୍ଯ୍ୟ କରିଥିଲେ, ରାଜନୀତି କ୍ଷେତ୍ରରେ ରହିବାର ସୁଯୋଗ ପାଇ ଉତ୍କଳ ସମ୍ମିଳନୀର ସମ୍ପ୍ରସାରଣ, ସ୍ୱତନ୍ତ୍ର ପ୍ରଦେଶ ଗଠନ, ଦେଶ ମିଶ୍ରଣ ଆନ୍ଦୋଳନରେ ବିଭିନ୍ନ ସ୍ତରରେ, ବିଭିନ୍ନ ବିଭାଗରେ ବିଶିଷ୍ଟ ଭାଗ ନେଇ ପରେ କୃତିତ୍ୱ ଅର୍ଜନ କରିଥିଲେ ।

ସନ ୧୯୦୩ ମସିହାରୁ ୧୯୪୪ ପର୍ଯ୍ୟନ୍ତ ଅର୍ଥାତ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସେ ଉତ୍କଳର ସେବା କାର୍ଯ୍ୟରେ ନିଯୁକ୍ତ ରହିଥିଲେ । ଗୋପବନ୍ଧୁ ଦାସଙ୍କ ସହିତ ସହଯୋଗୀ ଭାବରେ ବହୁ ବର୍ଷ ବିଭିନ୍ନ କ୍ଷେତ୍ରରେ କାର୍ଯ୍ୟକରି ଜୀବନର ଶେଷଭାଗରେ ଦୁଇବନ୍ଧୁ ବିଭିନ୍ନ ରାଜନୀତିକ ଗୋଷ୍ଠୀରେ ଅଙ୍ଗୀଭୂତ ହେଲେହେଁ ଉଭୟଙ୍କର ବନ୍ଧୁତ୍ୱ ଅକ୍ଷୁଣ୍ଣ ରହିଥିଲା । ୧୯୩୭ ମସିହାରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ଗଠନ ହେବାରେ ଓଡ଼ିଶା ବିଧାନ ସଭା ପାଇଁ ବିଭିନ୍ନ ନିର୍ବାଚନ ସଂସ୍ଥା ଗଠିତ ହେଲା । ଉତ୍ତର ଓଡ଼ିଶାର ଜମିଦାର-ନିର୍ବାଚନମଣ୍ଡଳୀରୁ କନିକାର ରାଜା ବାହାଦୁର ପ୍ରାର୍ଥୀ ହେଲେ । ଏହି ନିର୍ବାଚନ ମଣ୍ଡଳୀରୁ ପ୍ରାର୍ଥୀ ହେବା ପାଇଁ ବ୍ରଜସୁନ୍ଦର ଦାସଙ୍କୁ ଅନୁରୋଧ କରାଯାଇଥିଲା । ସେସମୟକୁ କନିକା ଶାସନ ପ୍ରତି ବିରୁଦ୍ଧ ଜନମତ ପ୍ରସ୍ତୁତ ହୋଇଥିଲା । ବ୍ରଜସୁନ୍ଦର କହିଲେ, "କନିକା ରାଜା ବାହାଦୁର ମୋର ବନ୍ଧୁ, ବନ୍ଧୁତା ଓ ପ୍ରତିଦ୍ୱନ୍ଦିତା ଏକ ସ୍ଥାନରେ ରହି ନପାରେ ।" ଏଣୁ ଜୟପୁରକୁ

ହେବାର ସମ୍ଭାବନା ଥିଲେହେଁ ସେ ସେଥିପାଇଁ ପ୍ରାର୍ଥୀ ହୋଇ ନଥିଲେ । ୧୯୩୮ ମସିହାରେ କନିକାର ରାଜା ଓଡ଼ିଶା ବିଧାନ ସଭାର ସଭ୍ୟପଦରୁ ଇସ୍ତଫା ଦେବା ପରେ ସେ ସ୍ଥାନରେ ବ୍ରଜସୁନ୍ଦର ନିର୍ବାଚିତ ହୋଇଥିଲେ ।

୧୯୪୧ ମସିହାରେ ଯେତେବେଳେ ପାରଳାଖେମଣ୍ଡି ମହାରାଜ ଅକଂଗ୍ରେସ ମନ୍ତ୍ରିମଣ୍ଡଳ ଗଢ଼ିଲେ, ସେତେବେଳେ ବ୍ରଜସୁନ୍ଦର କଂଗ୍ରେସ ଗୋଷ୍ଠୀର ସଭ୍ୟଥିଲେ । ଉକ୍ତ ମନ୍ତ୍ରିମଣ୍ଡଳରେ ତାହାଙ୍କୁ ସ୍ଥାନ ନଦେବାରୁ ଉକ୍ତ ମନ୍ତ୍ରିମଣ୍ଡଳର ବିରୋଧ କରିବାକୁ କେତେକ ବନ୍ଧୁ ବ୍ରଜସୁନ୍ଦର ଦାସଙ୍କୁ ପ୍ରବର୍ତ୍ତାଇ ଥିଲେ । ବ୍ରଜସୁନ୍ଦର ବିରୋଧ କରିଥିଲେ ସେହି ମନ୍ତ୍ରିମଣ୍ଡଳ ଭାଙ୍ଗିଯିବାର ଯଥେଷ୍ଟ ସମ୍ଭାବନା ଥିଲା । କାରଣ ଉକ୍ତ ମନ୍ତ୍ରିମଣ୍ଡଳ କଂଗ୍ରେସ ଅପେକ୍ଷା ମାତ୍ର ଗୋଟିଏ ବା ଦୁଇଟି ଅଧିକ ଭୋଟରେ ଚଳୁଥିଲା । କିନ୍ତୁ ବ୍ରଜସୁନ୍ଦର କହିଲେ "ଗୋଷ୍ଠୀବିରୋଧୀ ହେବ ନାହିଁ" । ସ୍ୱାର୍ଥ ପାଇଁ ଦଳ ଗଢ଼ିବା, ଦଳ ଭାଙ୍ଗିବା, ମାଡ଼ ଚକଟି ଯିବା, ଅନ୍ୟାୟର ଆଶ୍ରୟ ନେବା ତାଙ୍କ ଜୀବନରେ କେବେ ଘଟିନାହିଁ । ନିର୍ମଳ, ନୀତିବାନ, ଚରିତ୍ରବାନ ଜୀବନ ହେତୁରୁ ବ୍ରଜସୁନ୍ଦର ଆମ୍ଭମାନଙ୍କର ଚିର ନମସ୍ୟ ।

—❋—

# ମୋ ସ୍ମୃତିରେ ବ୍ରଜସୁନ୍ଦର

## ଚିତ୍ତହାରୀ ଶ୍ୟାମସୁନ୍ଦର କର

ବ୍ରଜସୁନ୍ଦର ଦାସଙ୍କର ପରଲୋକ ହୋଇ ଯାଇଛି ସତ୍ୟ, ମାତ୍ର ତାଙ୍କର ସ୍ନେହ, ଆନ୍ତରିକତା, ସରସ ଓ ନିରଳସ ଜୀବନ ତାଙ୍କୁ ମୋ ପାଖରେ ଚିରଞ୍ଜୀବୀ କରି ରଖିଛି । ବ୍ରଜ ବାବୁଙ୍କ ସହିତ ମୋର ବନ୍ଧୁତା ଅତି ଘନିଷ୍ଠ ଥିଲା । ଯେଉଁ କେତେ ବର୍ଷ ମୁଁ ତାଙ୍କ ସହିତ ନାନାପ୍ରକାର ଅବସ୍ଥା ଓ ପରିସ୍ଥିତି ମଧ୍ୟ ଦେଇ ଚଳିଥିଲି, ସେଇ ଅବକାଶରେ ତାଙ୍କର ବ୍ୟକ୍ତିଗତ, ପାରିବାରିକ ଓ ସାମାଜିକ ଜୀବନ ସମ୍ପର୍କରେ ମୁଁ ଉତ୍ତମ ରୂପେ ଜାଣିବାର ସୁଯୋଗ ପାଇଥିଲି ଏବଂ ତାହାହିଁ ଆମ ଦୁହିଁଙ୍କର ବନ୍ଧୁତ୍ୱକୁ ସୁଦୃଢ଼ କରି ପାରିଥିଲା ।

ବ୍ରଜସୁନ୍ଦରଙ୍କର ଜୀବଦ୍ଦଶା ମଧ୍ୟରେ ମୁଁ ତାଙ୍କୁ କେବେ କାହାରି ଉପରେ ବୈରଭାବ ପୋଷଣ କରିବାର ଦେଖିନାହିଁ କିମ୍ବା ତାଙ୍କ ଉପରେ କାହାର ରାଗ, ଅହଂକାର ଥିବାର ମୋର ମନେ ହୁଏ ନାହିଁ । ତାଙ୍କର ସରଳ ନିଷ୍କପଟ ବ୍ୟବହାର ଦ୍ୱାରା ବରଂ ଲୋକେ ତାଙ୍କୁ ଅତି ଆପଣାର ଭାବି, ଭଲ ମନ୍ଦ ଠିକଣାକି ସବୁ କଥା ମନ ଖୋଲି କହୁଥିଲେ ଏବଂ ଆବଶ୍ୟକ ଥିଲେ ଉପଯୁକ୍ତ ପରାମର୍ଶ ମଧ୍ୟ ଗ୍ରହଣ କରୁଥିଲେ । ବୁଦ୍ଧିଜୀବୀମାନେ ମଧ୍ୟ ଅନେକସମୟରେ ତାଙ୍କଠାରୁ କୌଣସି କୌଣସି ବିଷୟରେ ପରାମର୍ଶ ନେଉଥିଲେ । ତାଙ୍କର ଧୀଶକ୍ତି ଅତି ପ୍ରଖର ଥିବା ହେତୁ ଯେକୌଣସି ବିଷୟରେ ଅବିଳମ୍ବେ ସେ

ସନ୍ତୋଷଜନକଭାବେ ଅତି ଚମତ୍କାର ବିଚାରଶୀଳ ପରାମର୍ଶ ଦେଇ ପାରୁଥିଲେ ।

ଓଡ଼ିଶାର ସାହିତ୍ୟ, ସଙ୍ଗୀତ, କଳା ତଥା ଜନସାଧାରଣଙ୍କର ଉନ୍ନତି କଳ୍ପେ ଯଦି କେହି କିଛି ପ୍ରସ୍ତାବ ଆଗତ କରନ୍ତି, ଏପରିକି ଗୋଟିଏ ପିଲାଟିଏ ମଧ୍ୟ ଯଦି କୌଣସି ପ୍ରସ୍ତାବ ଦିଏ, ତେବେ ସେ ତାହାକୁ ଗମ୍ଭୀର ଭାବେ ଚିନ୍ତା କରି ପ୍ରସ୍ତାବଟିକୁ କାର୍ଯ୍ୟକାରୀ କରିବାକୁ କିଛି ନା କିଛି ଗୋଟାଏ ଉପାୟ ଉଦ୍ଭାବନ କରୁଥିଲେ । ଏ କ୍ଷେତ୍ରରେ ତାଙ୍କର ବୁଦ୍ଧି ଓ ଦୂରଦୃଷ୍ଟି ଅତି ଦୃଢ଼ ଓ ଅଭ୍ରାନ୍ତ ଥିଲା । ଓଡ଼ିଶାର ସାହିତ୍ୟ ଓ ସଙ୍ଗୀତର ଦୀର୍ଘଜୀବନ କାମନାର୍ଥେ, ତାଙ୍କର ଉତ୍କଳ ସାହିତ୍ୟ ସମାଜ ଓ ସଙ୍ଗୀତ ସମାଜ ପ୍ରତି ଗମ୍ଭୀର ସହାନୁଭୂତି ରହିଥିଲା । ବିଗତ ମହାଯୁଦ୍ଧ କାଳରେ ତତ୍କାଳୀନ ସରକାରଙ୍କର ଅଧୀନରେ, ସେ ସଙ୍ଗୀତ ପ୍ରଚାର ବିଭାଗ ଦାୟିତ୍ୱରେ ରହିଥିଲେ । ଏହାର ମୁଖ୍ୟ ଉଦ୍ଦେଶ୍ୟ ଥିଲା ସଙ୍ଗୀତ ମାଧ୍ୟମରେ ଓଡ଼ିଶାବାସୀଙ୍କୁ ଧ୍ୱଂସମୁଖୀ ଯୁଦ୍ଧର ଭୟାବହ ପରିଣାମ ବିଷୟରେ ସତର୍କ କରାଇଦେବା । ଏହାଦ୍ୱାରା ମଧ୍ୟ ଅନେକ ସାହିତ୍ୟିକ, କବି, ସଙ୍ଗୀତଜ୍ଞ ବିଭିନ୍ନ କାର୍ଯ୍ୟରେ ନିଯୁକ୍ତ ହୋଇ ନିଜ ନିଜର ଭରଣ ପୋଷଣ ନିମିତ୍ତ ସମର୍ଥ ହୋଇ ପାରିଥିଲେ । ପୁରାତନ ଓ ମର୍ଯ୍ୟାଦା-ପୂର୍ଣ୍ଣ ଲେଖାବଳୀକୁ ପ୍ରକାଶ କରିବା ଉଦ୍ଦେଶ୍ୟରେ ବହୁ ପୂର୍ବରୁ ଗୋଟିଏ ଛାପାଖାନା ବସାଇଥିଲେ, ଯାହା ଓଡ଼ିଶାରେ "ମୁକୁର ପ୍ରେସ୍" ନାମରେ ସୁପରିଚିତ । ଅବସର ସମୟରେ ମଧ୍ୟ କାବ୍ୟ, କବିତା, ଗଳ୍ପ ଇତ୍ୟାଦି ଲେଖିବାର ଆଗ୍ରହ ତାଙ୍କର ଥିଲା । ତାଙ୍କର ସ୍ୱରଚିତ ଲେଖାବଳୀର ସନ୍ଧାନ ନେଲେ ହୁଏତ ମିଳିପାରେ । ଏତେ ଜଂଜାଳ, ଦାୟିତ୍ୱ ଭିତରେ ସର୍ବଦା ବୁଡ଼ି ରହିଲେହେଁ ସେ ଧର୍ମ ପଥରୁ କେବେ ବିଚ୍ୟୁତ ହୋଇ ନ ଥିଲେ । ଶ୍ରୀମଦ୍‌ଭଗବତ୍ ଗୀତା ପ୍ରତି ତାଙ୍କର ବିଶେଷ ଭକ୍ତି ଓ ଶ୍ରଦ୍ଧା ଥିଲା । ତାଙ୍କର ଇଚ୍ଛା ଥିଲା, ଯେପରି ପ୍ରତ୍ୟେକ ଓଡ଼ିଆ ଭାଇ ଗୀତାର ମର୍ମ ବୁଝନ୍ତୁ । ଏଣୁ ସେ ଗୀତାର ବହୁଳ ପ୍ରସାର ନିମନ୍ତେ ଖୁବ୍ ଶସ୍ତା ମାତ୍ର ଦଶପଇସା ମୂଲ୍ୟରେ ଗୋଟିଏ ଶ୍ଳୋକ ଗୀତା ଛପାଇ ଥିଲେ। ସମୟ ସମୟରେ ସେ ଗୀତାର ପଦ୍ୟାବଳୀ କୌଣସି ରାଗ ରାଗିଣୀ ଦ୍ୱାରା ଅର୍ଥାତ୍ ସଙ୍ଗୀତ ମାଧ୍ୟମରେ ଲୋକମାନଙ୍କୁ କିପରି ପ୍ରଭାବିତ କରି ପାରିବ, ଏ ବିଷୟରେ ମୋ ସହିତ ଖୁବ୍ ଆଗ୍ରହରେ ଆଲୋଚନା କରନ୍ତି । ନିଜେ

ଗୀତ ନ ବୋଲି ପାରିଲେ ମଧ୍ୟ ଗୀତ ପ୍ରତି ତାଙ୍କର ଗଭୀର ଆସକ୍ତି ଥିଲା । ତାଙ୍କର ଦୃଢ଼ ଧାରଣା ଥିଲା ଯେ, ଯେକୌଣସି ବିଷୟ ସଂଗୀତ ମାଧ୍ୟମରେ ପ୍ରବୃତ୍ତି ହେଲେ, ଲୋକେ ଖୁବ୍ ଶୀଘ୍ର ବୁଝିପାରିବେ ଏବଂ ଏହାଦ୍ୱାରା ଲୋକଙ୍କୁ ସରଳ ନିରାଡ଼ମ୍ବର, ନିରଳସ ଜୀବନ ଯାପନ କରିବାକୁ କଷ୍ଟ ବୋଧ ହେବନାହିଁ । ତାଙ୍କର ଏପରି ଆଗ୍ରହ ଦେଖି ମୁଁ ପରିହାସ ଛଳରେ କହେ "ଜାଣି ଘୋଡ଼ାର ଶିଂଗ ନାହିଁ—" ଅବଶିଷ୍ଟାଂଶ ସେ ପୂରଣ କରି ଦେଇ ଖୁବ୍ ହସନ୍ତି ।

ଆଉ ଗୋଟିଏ କଥା ଏବେ ମନେ ପଡ଼ିଲେ ହସ ଲାଗେ । ଦିନେ ଦିନେ ସେ ନିଜେ ବଜାରରୁ ସଉଦା ପତ୍ର କିଣି, ସ୍ୱ ହସ୍ତରେ ରନ୍ଧନ କାର୍ଯ୍ୟ ଆରମ୍ଭ କରି ଦିଅନ୍ତି । ସେ ଦିନ ଏ କାର୍ଯ୍ୟ କରିବାରେ ସେ ଖୁବ୍ ଆନନ୍ଦ ଓ ଗର୍ବ ଅନୁଭବ କରନ୍ତି । କିନ୍ତୁ ଭୋଜନସାଥି ମୁଁ ହୁଏ । ନିଜେ ଖାଇବା ଠାରୁ ଅନ୍ୟକୁ ଖୁଆଇବାରେ ତାଙ୍କର ତୃପ୍ତି ଅଧିକ । ଖାଇବାବେଳେ କହନ୍ତି "ବୁଝିଲ ସିଂହ ସାଏ, ତୁମେ ତ ବଡ଼ ପେଟିଆ ଜଗା କାଳିଆ ପାଖରେ ଖାଇବା ଲୋକ, ପୁଣି ଗାଇବା ଲୋକ, ଆମେ କଅଣ, ଖାଇବାକୁ ଦେବା ? 'ହଉ ସଂସାରେ ଥିବା ଯେତେଦିନ, ଆନନ୍ଦ କରୁଥିବା ମନ । ତା' ସଙ୍ଗେ ସଙ୍ଗେ ଭାତ ଗୁଣ୍ଡା ପାଟିରେ ଥିବା ଅବସ୍ଥାରେ ଦଦଡ଼ା କଣ୍ଠରେ ପଦେ ବୋଲି ଦିଅନ୍ତି, "ଜାପାନିଆ ଜାଲିଚ୍ଛି ନିଆଁ— ପୋଡ଼ି ଦେବଟିରେ ସାରା ଦୁନିଆଁ······।" ବନ୍ଧୁ ବ୍ରଜବାବୁ ଆଜି ଲୋକ ଲୋଚନର ବହୁଦୂରରେ—କିନ୍ତୁ ମୋ ସ୍ମୃତିରେ—ତଥା ଏ ଦେଶର ଅଗଣିତ ନରନାରୀଙ୍କର ସ୍ମୃତିରେ ତାଙ୍କର ବନ୍ଧୁବତ୍ସଳତା, ମହାନୁଭବତା ଓ ଦେଶପ୍ରୀତି ଏବେ ମଧ୍ୟ ଅବସ୍ମରଣୀୟ ହୋଇ ରହିଅଛି ।

—୦—

# ଜନପ୍ରିୟ ବ୍ରଜସୁନ୍ଦର

## ଶ୍ରୀ ରାମାରଂଜନ ମହାନ୍ତି

ସେତେବେଳେ କଟକରେ ଥାନ୍ତି ମୁଷ୍ଟିମେୟ କବିରାଜ। ସେମାନଙ୍କ ମଧ୍ୟରୁ ଅଧିକାଂଶଙ୍କର ଶିକ୍ଷା ସୁଗୋଚର ବିଜ୍ଞାନସମ୍ମତ ନଥିଲା। ଯୁବକ ଓଡ଼ିଆ ବ୍ରାହ୍ମଣ ଜଣକ କଲିକତାର ବିଖ୍ୟାତ କବିରାଜଙ୍କ ନିକଟରେ ବର୍ଷ ବର୍ଷ ଧରି ଚିକିତ୍ସା ଶାସ୍ତ୍ର ଓ ଚିକିତ୍ସା ପ୍ରଣାଳୀରେ ନିପୁଣତା ଲାଭକରି କଟକ ଆସିଛନ୍ତି। ତାଙ୍କର ଦରକାର ବ୍ୟବସାୟ କରିବା ପାଇଁ ବଜାରରେ ଗୋଟିଏ ଘର। ଘର ବୁଝିଦିଅ, ଖାଲିତ ଘରରେ ଚଳିବ ନାହିଁ। ଔଷଧ ପ୍ରଭୃତି ରଖିବା ପାଇଁ ଦରକାର ଆଲମାରି, ଚିକିତ୍ସାପାଇଁ ଆସିବା ଲୋକଙ୍କର ବସିବା ପାଇଁ ଦରକାର ଚୌକି, ଟେବୁଲ୍ ପ୍ରଭୃତି ନାନାପ୍ରକାର ଉପକରଣ, କୋଉଠୁଁ ପାଇବେ ? ନିଜଘରୁ; ନିଜର ବ୍ୟବହାର୍ଯ୍ୟ ଉପକରଣରୁ ସେ ସବୁ ଯୋଗାଇ ଦିଅ। ନୂଆ ନୂଆ ବ୍ୟବସାୟ, ଆୟର ପନ୍ଥା ସୁଗମ ହୋଇ ନଥିବ, ଘରୁ ସବୁ ଗୃହଜଳ ଦିଅ ପରିପାଟିର ସହିତ ବନା ଯାଇଥିବା ପରିବା ଯୋଗାଇ ଦିଅ। ସେତିକି ନୁହେଁ, ଖାଇସାରିଲା ପଛକୁ ବଟାରେ ଭଙ୍ଗାପାନ ବି ପଠାଇଦିଅ। ତାପରେ ଅବସର ମିଳିଲା ବେଳେ ବ୍ୟବସାୟ ପର୍ଯ୍ୟନ୍ତରେ ନିଭାଇ ସୁଙ୍ଖୋଳି ଆସ। ଖାଲି ସେତିକି ନୁହେଁ, ତା ସହିତ ବନ୍ଧୁ ବାନ୍ଧବ ମହଲରେ ତାଙ୍କର ପ୍ରଚାର ପାଇଁ ପ୍ରତିଷ୍ଠା ପାଇଁ ବ୍ୟବସ୍ଥା ବି କରିବାକୁ ହେବ। ଏକଥା ଦିନେ ଦୁଇଦିନ ନୁହେଁ, ମାସ ମାସ ଧରି କବିରାଜଙ୍କର

ଆପୁର ପନ୍ଥା ସୁଗମ ନହେବା ପର୍ଯ୍ୟନ୍ତ ଧୈର୍ଯ୍ୟ ଧରି ଯୋଗାଇ ଦେବା ପଛରେ ଯେ ମନ—ଯେ ମମତା ଥାଏ, ତାହା ସାଧାରଣ କଥା ଛାଡ଼ି ଦିଅଯାଉ ଅସାଧାରଣଙ୍କ ମଧ୍ୟରେ ମଧ୍ୟ ଦୁର୍ଲଭ । ଏକଥା ମୋ କଳ୍ପନା ନୁହେଁ—କଟକର ପ୍ରତିଷ୍ଠିତ ବଙ୍ଗ, ବୟୋବୃଦ୍ଧ କବିରାଜ ହରେକୃଷ୍ଣ ଦାସଙ୍କ ମୁହଁରୁ ମୁଁ ଥରେ ନୁହେଁ, ବାରମ୍ବାର ଶୁଣିଛି—ମହାନୁଭବ ବ୍ରଜସୁନ୍ଦରଙ୍କ ସମ୍ପର୍କରେ ॥,

ଆପ୍ତ ଅପେକ୍ଷା ବ୍ୟୟ ବଳି ପଡ଼ୁଛି । ଅଦାୟ ହୋଇଥିବା ୧ରକାରୀ ଲଟେବନ୍ଦୀ ଟଙ୍କା ଜମିଦାରଙ୍କ ଖର୍ଚ୍ଚରେ ଲାଗି ଯାଇଛି । ଟଙ୍କା ଯୋଗାଡ଼ କରି ଦାଖଲ କରିବାରେ ସମ୍ଭାବନା ନାହିଁ । ମହାଲ ନିଲାମରେ ଉଠିବ । କଥାଟା ଖଜଣା ଅସୁଲକାରୀ ତହସିଲଦାରଙ୍କ ମୁହଁରୁ ବାହାରି ପ୍ରଜାଙ୍କ କାନକୁ ଗଲା । ଜମିଦାରୀ ଗୃହୀତ ଜମିଦାର ସହିପାରନ୍ତି; ତା ବୋଲି ପ୍ରଜା ସହିବେ କାହିଁକି ? ଖଜଣା ଟଙ୍କାତ ଦରକାର, ଦିଅ, କର୍ଜ୍ଜ କରିଏ, ବନ୍ଧକ ଦିଏ, ଭାଗକରିଏ ଯେ ଯେତେ ପାରୁଛ ଆଗତୁରା ଦେଇ-ଦିଅ । ମାହାଲ ଟଙ୍କା ଦାଖଲ ହୋଇଯାଉ । ଫଳରେ ସେହିକଥା ହେଲା । ପ୍ରଜାମାନେ ଯେ ଯାହା ପାରିଲେ କର୍ଜ୍ଜ ଖଜଣା ଜମିଦାରଙ୍କ କଚେରୀକୁ ଯାଇ ତହସିଲଦାର ପାଖେ ଆଗତୁରା ଦାଖଲ କରିଗଲେ । ଅନ୍ୟ ସବୁ ଜମିଦାରୀରେ ଜମିଦାରୀ ଜମିଦାରର । ଏଠେଇ କିନ୍ତୁ ଜମିଦାରୀ କେବଳ ଜମିଦାରର ନୁହେଁ, ଜମିଦାର ପ୍ରଜା ଉଭୟଙ୍କର । କଥାଟା ଉପନ୍ୟାସ ପରି ଜଣା ପଡ଼ିଲେ ମଧ୍ୟ ବାସ୍ତବ ସତ୍ୟ । ଜମିଦାର ପ୍ରତି ପ୍ରଜାଙ୍କର ଏଇ ମନୋଭାବ ଅତ୍ୟନ୍ତ ବିରଳ ହେଲେ ମଧ୍ୟ ବ୍ରଜବାବୁଙ୍କ ପକ୍ଷରେ ଥିଲା ଅତି ଅସମ୍ଭବ ଭାବରେ ସମ୍ଭବ ।

ପ୍ରାୟ ଷାଠିଏ ବର୍ଷ ତଳର କଥା । ଆଜିକାଲି ପରି ସେତେବେଳେ କଟକରେ ଏତେ ବହି ଦୋକାନ ନଥାଏ । ଶୁକଦେବ ରାମ୍ ମାରବାଡ଼ୀଙ୍କ ପରେ ସ୍ୱର୍ଗତ ପଣ୍ଡିତ ଆକୁଳି ମିଶ୍ରଙ୍କର କଟକ ଟ୍ରେଡ଼ିଂ କମ୍ପାନୀ ସେତେବେଳେ ଶୈଶବ ଅବସ୍ଥାରେ ଥାଏ । ଗରିବଙ୍କ ପଣ୍ଡିତ ମାସ ପନ୍ଦରଟି ଟଙ୍କା ଦରମା ପାଇଁ ସେତେବେଳେ ଟ୍ରେନିଂ ସ୍କୁଲର ପଣ୍ଡିତ । ତଳଶ୍ରେଣୀର ଅର୍ଥାତ୍ ପ୍ରାଥମିକ ଶ୍ରେଣୀର ପିଲମାନଙ୍କର ଅଙ୍କ ଶିକ୍ଷାପାଇଁ ପୁସ୍ତକର ଅଭାବ ଅଥଚ ପ୍ରାଥମିକ ସ୍କୁଲ ସଂଖ୍ୟା ଦିନକୁ ଦିନ ବଢ଼ିଚାଲିଛି କଣ କରିଯିବ ? ବ୍ରଜବାବୁ ପ୍ରସ୍ତାବ କଲେ—"ପଣ୍ଡିତେ, ବହି ଲେଖ,

ଆକୁଳ ପଣ୍ଡିତଙ୍କଠାରୁ କାଗଜ ଧାର କରିଥାଣ, ମୁଁ ବନ୍ଧୁ ଗୁପ୍ତି ଦେଉଛୁ ଗୁପାଖର ବନ୍ଧୁବନ୍ଧୀ ପରେ ଧୀରେ ସୁବଚ୍ଛ ପଇ । କହିଦେବ ।'' ବନ୍ଧୁଛପା ହେଲା ଏବଂ ସେହି ବନ୍ଧୁଖଣ୍ଡିଙ୍କ ବ୍ୟାରମଣ ପ୍ରେସ ଓ ପୁସ୍ତକାଳୟ ସତ୍ତ୍ୱାଧିକାରୀଙ୍କର ସର୍ଗଦ୍ୱାର ଖୋଲି ଦେଲା ॥

ଓଡ଼ିଶାରେ ରାଜନୈତିକ ଜୀବନର ପ୍ରଥମ ଜାଗରଣ ଆଣେ ଉତ୍କଳ ସମ୍ମିଳନୀ । ଓଡ଼ିଶା ବୋଇଲେ ସର୍ବେ ବୁଝୁଥିଲେ, ପୁରୀ, କଟକ, ବାଲେଶ୍ୱର ତିନୋଟି ଜିଲ୍ଲା । ଗଞ୍ଜାମ ମାନ୍ଦ୍ରାଜରେ, ସମ୍ବଲପୁର ମଧ୍ୟ ପ୍ରଦେଶରେ, ସିଂହଭୂମ ବଙ୍ଗ ଭିତରେ ରାଞ୍ଚି ସୁବାରେ ଛବିଶ ଗଡ଼ଜାତ ଓଡ଼ିଆ ରାଜ୍ୟ ହେଲେ ମଧ୍ୟ ଶାସନ ସୂତ୍ରରେ ତାହା ଓଡ଼ିଶାଠାରୁ ସବୁ ଦିଗରୁ ସଂପର୍କ ଶୂନ୍ୟ । ଏହି ଦରିଦ୍ର, ନିଷ୍ପେଷିତ, ଖଣ୍ଡ ବିଖଣ୍ଡିତ ଜାତିର ପ୍ରାଣରେ ଜାତୀୟତାର ଜାଗରଣ ଆସିବା ଦିଗରେ ସେତେବେଳେ ସ୍ୱର୍ଗତ କୁଳବୃଦ୍ଧ ମଧୁସୂଦନଙ୍କ ପରଠାରୁ ଯାହାର ଅବଦାନ ନିକଟରେ ଜାତି ଋଣୀ ରହିଛି, ତାହାହେଲେ ପ୍ରଥମେ ମାନସପଟରେ ଉଦିତ ହୋଇ ଉଠେ ପଣ୍ଡିତ ଗୋପବନ୍ଧୁଙ୍କ ନାମ, ତା ପରେ ବ୍ରଜବାବୁ । ୧୯୨୧ର ଅସହଯୋଗ ଆନ୍ଦୋଳନ ପରେ ଗୋପବନ୍ଧୁ କେବଳ ନୁହନ୍ତି, ସେତେବେଳର ଉତ୍କଳ କଂଗ୍ରେସ ନେତାମାନଙ୍କର ଧାରଣା ଥିଲା—ଆଗ ଦେଶର ସ୍ୱାଧୀନତା, ପରେ ଦେଶ ମିଶ୍ରଣ । କାରଣ ସେତେବେଳେ ସେମାନେ ଧାରଣା କରି ନେଇଥିଲେ ସ୍ୱାଧୀନତା ପାଇବା ପରେ ସ୍ୱରାଜ ସରକାରଙ୍କଠାରୁ ଏ ବିଷୟରେ ସଂପୂର୍ଣ୍ଣ ନ୍ୟାୟ ବିଚାର ପାଇ ପାରିବେ । ସେଥିପାଇଁ ୧୯୨୧ ମସିହା ଅର୍ଥାତ୍ ଓଡ଼ିଶାରେ କଂଗ୍ରେସର ପ୍ରତିଷ୍ଠା ଦିନଠାରୁ ଦେଶ ମିଶ୍ରଣ ଉତ୍କଳ ସମ୍ମିଳନୀ ସହିତ ଓଡ଼ିଶାର ନିଷ୍ଠାପର ତ୍ୟାଗୀ କଂଗ୍ରେସ ନେତାମାନଙ୍କର ପ୍ରାୟ ପ୍ରତ୍ୟକ୍ଷ ସହଯୋଗ ନିଷ୍କ୍ରିୟ ହୋଇ ଯାଇ- ଥିଲା । ସେତେବେଳେ ବ୍ରଜବାବୁ ଅନ୍ୟାନ୍ୟମାନଙ୍କ ସହିତ ଉତ୍କଳ ସମ୍ମିଳନୀର ଜଣେ ବିଶିଷ୍ଟ ସ୍ୱତନ୍ତ୍ର କର୍ମଧାର ଆସନ ବରଣ କରି ନେଇଥିଲେ । ତୁଳନମସ୍ତା ପୂଜାହେବ—ବ୍ରଜବାବୁଙ୍କ ଘରଥିଲା ତାର ପଛ ଭୂମିକାର ପୀଠସ୍ଥଳୀ । ସମ୍ମିଳନୀର ସ୍ୱତନ୍ତ୍ର ଅଫିସ ଘର ନାହିଁ । ଓଡ଼ନେଲ କମିସନ୍ ଆସିଛି । ରିପୋର୍ଟ ଲେଖାହେବ । ଗଞ୍ଜାମରୁ ନିରଞ୍ଜନ ବାବୁ, ମୟୂରଭଞ୍ଜରୁ ପରମାନନ୍ଦ ବାବୁ, ମେଦିନୀପୁରରୁ ଭାଗବତ

ବାବୁ, ସିଂହଭୂମରୁ କୃଷ୍ଣଚନ୍ଦ୍ର ଆଗ୍ରୱାଲଙ୍କଠାରୁ ଆରମ୍ଭକରି ପାରଲା, କନିକା, ପ୍ରଭୃତି ଯେଉଁ ମୁଖ୍ୟ ମୁଖ୍ୟ ବ୍ୟକ୍ତିମାନେ ଆସିବେ— ସମସ୍ତଙ୍କର ପରାମର୍ଶ ସଭା, ରିପୋର୍ଟ ଲେଖା ଇତ୍ୟାଦି କାମ ହେବ ବ୍ରଜବାବୁଙ୍କ ଘରେ । ଅନ୍ୟମାନେ ଯେପରି ବନ୍ଧୁବାନ୍ଧବ ଆତ୍ମୀୟ ସ୍ୱଜନ ଆଉ ବ୍ରଜବାବୁ କର୍ତ୍ତା ।

ସେ ଯୁଗରେ କେବଳ ଉଚ୍ଚ ଶିକ୍ଷାରେ କୃତିତ୍ୱ ସହିତ ସାଧାରଣ ସ୍ୱାସ୍ଥ୍ୟ, ଦାୟିତ୍ୱସଂପନ୍ନ ଉଚ୍ଚପାଦାଧିକାରୀ ସରକାରୀ ଚାକିରୀ ପାଇଁ ଏକମାତ୍ର ଯୋଗ୍ୟତା ନ ଥିଲା; ଶିକ୍ଷାର ଆଭିଜାତ୍ୟ ସହିତ ପରମ୍ପରାଗତ ବଂଶ-ମର୍ଯ୍ୟାଦା ଓ ଶରୀର ଗଠନ ପରିପାଟିର କମନୀୟତା ବା ଆଭିଜାତ୍ୟ ପ୍ରଭୃତି ଗୁଣ ମଧ୍ୟ ଅତି ଆବଶ୍ୟକୀୟ ଥିଲା ।

ତ୍ରିଗୁଣର ସମାବେଶ ବା ଏକାଧାରରେ ତ୍ରିବେଣୀ ସଂଗମ ନହେଲେ କେହି ଦାୟିତ୍ୱସଂପନ୍ନ ଉଚ୍ଚ ସରକାରୀ ଚାକିରି ପାଉ ନଥିଲେ । ତିନୋଟି ଯାକ ମଧ୍ୟରୁ କୌଣସିଟି ବ୍ରଜବାବୁଙ୍କର ଅଭାବ ନଥିଲା । ତାଙ୍କର ଯୌବନରେ ଓଡ଼ିଶାରେ ଏକାଧାରରେ ଏତେ-ଗୁଡ଼ିଏ ଗୁଣର ସମାବେଶ ତାଙ୍କ ସମସାମୟିକମାନଙ୍କ ମଧ୍ୟରେ କ୍ୱଚିତ୍‌ଙ୍କଠାରେ ଥିଲା ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ବରଂ ସେତେବେଳେ ଉଚ୍ଚ ସରକାରୀ ଚାକିରୀ ପାଇବା ଥିଲା ପରମ ସୌଭାଗ୍ୟ ବା ଗର୍ବର ବିଷୟ ।

ଏସବୁ ଗୁଣ ଏକତ୍ରରେ ଥିବା ସତ୍ତ୍ୱେ ବ୍ରଜବାବୁ କେବେ ଚାକିରି କରିବାକୁ ମନ ବଳାଇବା ତ ଦୂରର କଥା, ମନରେ ସ୍ଥାନ ଦେଇ ନଥିଲେ । ଉତ୍କଳ ସମ୍ମିଳନୀ ପ୍ରଭୃତି ରାଜନୈତିକ କାମ ସହିତ ସେ କେତେଦିନ ବିହାର ଓଡ଼ିଶା ଲେଜିସ୍‌ଲେଟିଭ୍ କାଉନ୍‌ସିଲ୍‌ରେ ଓଡ଼ିଶାର ଦୁଇଜଣ ମାତ୍ର ସଭ୍ୟଙ୍କ ମଧ୍ୟରେ ଅନ୍ୟତମ ଥିଲେ । ମଣ୍ଟେଗୁ ଚେମସ୍‌ଫୋର୍ଡ ରିଫର୍ମ ପରେ ସେ ଭାରତ ବଡ଼ଲାଟ ସଭା ଓ ୧୯୩୬ ରେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ପ୍ରତିଷ୍ଠିତ ହେଲାପରେ ଓଡ଼ିଶା ଲାଟସଭାର ସଭ୍ୟ ହୋଇଥିଲେ । ଏସବୁ କିନ୍ତୁ ତାଙ୍କ ରାଜନୈତିକ ଜୀବନର ମୁଖ୍ୟସ୍ଥାନ ଅଧିକାର କରି ନଥିଲା, ଥିଲା ଗୌଣ । ତାଙ୍କ ରାଜନୈତିକ ଜୀବନର ମୁଖ୍ୟ ଲକ୍ଷ୍ୟ ଥିଲା ଦେଶ ମିଶ୍ରଣ । କଟକରେ ଛିନ୍ନମସ୍ତା ପୂଜାର ପ୍ରଥମ କଳ୍ପନା ତାଙ୍କର ।

ସାହିତ୍ୟ ପ୍ରଚାର ପାଇଁ ସେ ମୁକୁର ପ୍ରେସ୍ ଓ ମୁକୁର ମାସିକ ସାହିତ୍ୟ ପତ୍ରିକା ପ୍ରତିଷ୍ଠା କରିଥିଲେ । ଏହାକେତେ ମଧ୍ୟ ମାସିକଆ ଉପନ୍ୟାସ ସିରିଜ୍ ପ୍ରତିଷ୍ଠା କରି କେତେଖଣ୍ଡ ଶ୍ରେଷ୍ଠ ଶ୍ରେଷ୍ଠ ଉପନ୍ୟାସ ପ୍ରକାଶ କରିଥିଲେ । ସ୍ୱର୍ଗତ ବିଶ୍ୱନାଥ କରଙ୍କ 'ଉତ୍କଳ ସାହିତ୍ୟ' ଓ ବ୍ରଜବାବୁଙ୍କ 'ମୁକୁର' ସେତେବେଳେ ଉତ୍କଳ ସାହିତ୍ୟ ଆକାଶରେ ମାତ୍ର ଦୁଇଟି ଉଜ୍ଜ୍ୱଳ ଜ୍ୟୋତିଷ୍କ ଥିଲେ । ଏ ଦୁଇଟି ପତ୍ରିକା ପରି ଉତ୍କଳରେ କୌଣସି ପତ୍ରିକା ସେତେବେଳେ ଏତେ ଦୀର୍ଘଦିନ ସ୍ଥାୟୀ ହୋଇ ନାହାନ୍ତି ଏବଂ ଉତ୍କଳର ଅଧିକାଂଶ ତତ୍କାଳୀନ ଲବ୍ଧ ପ୍ରତିଷ୍ଠିତ ଏବଂ ବିଗତ ଲେଖକମାନଙ୍କୁ ଏହି ଦୁଇଟି ପତ୍ରିକା ସେମାନଙ୍କର ସାହିତ୍ୟ-ଜୀବନ ପ୍ରତିଷ୍ଠା କରିବା ବିଷୟରେ ଏକାନ୍ତ ସହାୟକ ହୋଇଛନ୍ତି । ଖାଲି ସେତିକି ନୁହେଁ, ଏ ଦୁଇଟିଯାକ ସାହିତ୍ୟ ପତ୍ରିକାର ସଂପାଦକଙ୍କର ସ୍ନେହ ଶ୍ରଦ୍ଧା ସମସାମୟିକ ସାହିତ୍ୟିକ ମାନଙ୍କୁ ନାନାଭାବରେ ସେମାନଙ୍କ ସାହିତ୍ୟିକ ଜୀବନର ବିକାଶ ଦିଗରେ ସହାୟତା କରିଛି ।

ନିଷ୍ଠାପର ଦେଶ ସେବକ, ପ୍ରତିଭାବାନ ସାହିତ୍ୟିକ – ବିଚକ୍ଷଣ ରାଜନୈତିକ – ଖ୍ୟାତିସଂପନ୍ନ ଜମିଦାର ପ୍ରଭୃତି ଏ ଦେଶରେ ନିତାନ୍ତ ଅଭାବ ନ ଥିଲେ ବି, ଜମିଦାରି ଉଠିଯାଇ ଥିଲେ ମଧ୍ୟ, ଅନ୍ୟାନ୍ୟ ସଦ୍‌ଗୁଣ ଅଧିକାରୀ ବ୍ୟକ୍ତି ବର୍ତ୍ତମାନ ବା ଭବିଷ୍ୟତ୍‌ରେ ଅଭାବ ନାହାନ୍ତି କି ହେବେ ନାହିଁ । କିନ୍ତୁ ବ୍ରଜସୁନ୍ଦର ବାବୁଙ୍କ ପରି ମଧୁର ସ୍ୱଭାବ ସଫଳ ବ୍ୟକ୍ତି, ମମତାଭରା ଦେଶଭକ୍ତ, ଉପକାରୀ ଉତ୍ସାହଦାତା ବନ୍ଧୁ ସର୍ବଜନ ପ୍ରିୟ ବ୍ୟକ୍ତି କ୍ୱଚିତ୍ ଦେଖାଯାନ୍ତି । କେବଳ ଦେଶ ଜାତିକୁ ନୁହେଁ – ବ୍ୟକ୍ତି ବିଶେଷକୁ ତାଙ୍କର ଭଲ ପାଇବା ଥିଲା ନାରୀ ପରି ନିବିଡ଼, ଅଥଚ ତାହା ଆବିଳ ନୁହେଁ । ସେ ନିଜେ ଯେପରି ନିରାମିଷାଶୀ ଥିଲେ, ତାଙ୍କର ସ୍ନେହ ମମତା ପ୍ରଭୃତି ସକଳ ଗୁଣରେ ସେ ଥିଲେ ସେହିପରି ସ୍ୱଚ୍ଛ--ପବିତ୍ର ଓ ସୁନ୍ଦର । ପଙ୍କର ହୋତା ହୋଇ ବିତ୍ତ ସଂଗ୍ରହ କରିବା ତାଙ୍କର ପ୍ରକୃତି ନଥିଲା । ଅର୍ଥାତ୍ ନିଜର ସ୍ୱାର୍ଥ ଦୃଷ୍ଟିରୁ ନୁହେଁ – ଦେଶର ସ୍ୱାର୍ଥ ଦୃଷ୍ଟିରୁ ସେ ଥିଲେ ପ୍ରକୃତ ଦେଶଭକ୍ତ ଜନନାୟକ ।



# ବ୍ରଜ-ସ୍ମୃତି

ଶ୍ରୀ ଦୀନବନ୍ଧୁ ମହାନ୍ତି, କାବ୍ୟରଞ୍ଜନ

ନମସ୍ତେ ନମସ୍ତେ ହେ ବ୍ରଜସୁନ୍ଦର
ଉତ୍କଳର ଗୁଣୀ-ଗଣେ ଧୁରନ୍ଧର ।
ବିଦ୍ୟା-ବିଶାରଦ ହୋଇ ଯଥାକାଳେ
ଗୃହିଣୀର ମୋହ ତେଜି ଅବହେଳେ—
ସେବା କରିବାକୁ ମାତା ଉତ୍କଳର
ସାର କଲ ମନେ ହେ ବ୍ରଜସୁନ୍ଦର ।
ସେ ନୀରବ ସେବା ଦେଖିଛି ଯେ ଜନ
ଭୁଲିବ କି କେବେ ତାହା ଆଜୀବନ ।
ଉତ୍କଳ ମିଳନ-ପୀଠ ସମ୍ମିଳନୀ—
ସେବାରେ ନିଜକୁ କରିଲ ଅଗ୍ରଣୀ ।
ଋଷିକୂଲ୍ୟା ଠାରୁ ଗଙ୍ଗାଯ ଏ ବ୍ୟାପୀ
ସେ ଖ୍ୟାତି ସର୍ବତ୍ର ଘୋଷଇ ଅଦ୍ୟାପି ।
ଉତ୍କଳ ଭାରତୀ-ପଦ ସେବା ପ୍ରୀତି
ରସ ଗୃହୁଥିଲ ନୀରବରେ ନିତି ।
ବିରାଟ ଉତ୍କଳ ଗଢ଼ିବାକୁ ସଦା
ବହୁଥିଲ ତବ ହୃଦୟେ ନର୍ମଦା ।

ଯାହାଁ ଦେଖୁଥିଲ ସଫଳ ସ୍ୱପନ
ରହୁଥିଲ ସେଥୁ ଭବେ ନିମଗନ ।
ଚିନ୍ମୂର୍ତ୍ତି ଦେଶ ଖଣ୍ଡ ଉତ୍କଳର
ଚିର ଜନ ମନ ଗଢ଼ିଲ ନିକର ।
ଅନନ୍ତ ଉଦାର ଅକୂପାର ପରି
ମହାଭାବ ହୃଦେ ସଦା ଥିଲା ଧରି ।
ସଦା ଉତ୍କଳକୁ ଚହଲାଇବା ପାଇଁ
ସ୍ପନ୍ଦନ ମାନସ ଥିଲା ତବ ଠାଇଁ ।
ଆସୁଥିଲେ ସର୍ବେ ତୁମ୍ଭର ସଦନେ
ଭାରତର ବନ୍ଧୁ ଜ୍ଞାନୀ ଗୁଣୀଗଣେ ।
ତୁମ୍ଭ ସ୍ୱ ମନ୍ଦିର ଶ୍ରୀମନ୍ଦିର ପରି
ନେଉଥିଲ ସର୍ବେ ତୁମ୍ଭ ପାଶେ ଧରି ।
ସଙ୍ଗୀତ ସାହିତ୍ୟ ରସ ଅନୁଭବି
ରସ ମୁଗ୍‌ଧ ଥିଲ ହେ ନୀରବ କବି ।
ମୁକ୍ତ ଯୋଗୀ ପରି ନୀରବ ନିଶ୍ଚଳ
ଥିଲ ତୁମ୍ଭ ମନ ସଦା ଅବିଚଳେ ।
"ମୁକୁର" ତୁମ୍ଭର ପଢ଼ିଛନ୍ତି ଯେ ଥରେ
ଚିହ୍ନିଛନ୍ତି ତୁମ୍ଭଙ୍କୁ ଉତ୍ତମ ତଥରେ ।
ଦେଶପାଇଁ ଅବା ଦଶପାଇଁ କ୍ୱାପି
ଚିତ୍କାରେ କମାଇ ନାହିଁ ତ କଦାପି ।
ତଥାପି ତୁମ୍ଭର ଅନ୍ତର ବେଦନା
ନୀରବ କ୍ରନ୍ଦନେ ଫୁଟୁଥିଲା ସିନା ।
ଯେତେ ନଦ୍ୟା ସ୍ରୋତ ହେଉପଛେ ଠୁଳ
ମହାସିନ୍ଧୁ ତଥା ରହେ ଅବିଚଳ ।
ଅନନ୍ତ ଉଦାର ହୃଦୟ ତୁମ୍ଭର
ରହୁଥାଏ ତଥା ସଦା ନିର୍ବିକାର ।
ନଥିଲା ତୁମ୍ଭର ସୁଖେ ଅଭିମାନ
ନୋହୁଥିଲ କେବେ ଦୁଃଖେ ମ୍ରିୟମାଣ ।

କହା ସଙ୍ଗେ କେବେ ଅପ୍ରୀତି ଆଚର
କହୁନାହିଁ ପଦେ କଥା କଟୁକର ।
କିଣୁଥିଲ ସଦା ମିଷ୍ଟ କଥା କହି
ସବୁଜନ ମନ ସ୍ନେହ ଭାବ ବହି ।
ସଦା ଦରହାସ ଫୁଟିତ ବଦନେ
ଲୁଚିରଖି ହୃଦେ ଦୁଃଖର କଦନେ ।
ଗୁଣୀଗଣ ଲାଗି ମନ୍ଦିର ତୁମର
ରହୁଥାଏ ସଦା ମୁକ୍ତ ପରିସର ।
ହିମାଦ୍ରି ପ୍ରାନ୍ତରୁ କୁମାରୀକା ଯାଏ
ଭାରତର କେହି ଗୁଣଜ୍ଞ ଥୋକାଏ ।
ଆସୁଥିଲେ ଯେବେ ଉତ୍କଳ ଭ୍ରମଣେ
ଆତିଥ୍ୟ ସତ୍କାରେ ସେବ ପ୍ରାଣପଣେ ।
ବିଶାଳ ଉତ୍କଳେ ତୁମ୍ଭ ସଦୃ ପରି
ପାନ୍ଥଶାଳା କାହିଁ ନ ଥିଲା ସେପରି ।
ପଞ୍ଚଭୂତ ତବ ମିଶିଛି ପଞ୍ଚରେ
ମାତ୍ର ତୁମ୍ଭେ ସଦା ବଞ୍ଚିଛ ମଞ୍ଚରେ ।
ବିଶ୍ୱପ୍ରୀତି ସେନି ଗଢ଼ା ମନ ପ୍ରାଣ
ରହୁଥିଲା ତବ ଅକ୍ଳାନ୍ତ ଅମ୍ଳାନ ।
ପରରୁଷ ଲାଗି କହିବାକୁ କିଛି
ଉଚ୍ଚ ମନ ତବ କରୁଥିଲା ଛି ଛି ।
କର୍ତ୍ତବ୍ୟ ବୋଲି ଯା ଚିନ୍ତୁଥିଲ ମନେ
କରି ଯାଉଥିଲ ନୀରବ ସାଧନେ ।
ହେ ସାଧକ ତୁମ୍ଭେ ଯାଇଅଛ ଚାଲି
ଆସନ ତୁମ୍ଭର ପଡ଼ିଛି ତ ଖାଲି ।
କେହି ତାକୁ କେବେ କରିବ ପୂରଣ
ବୋଲି ଦେଖୁନାହିଁ କାହିଁ ଏକଜଣ ।
ଥିଲ ଅବା ସତେ ହୋଇ ହେ ଯଶାସ୍ୱୀ
ଥିଲ କର୍ମକୋଳେ ସତେ ଅପ୍ରକାଶୀ ।

ପାଇଛି ଅନ୍ତରେ ଯେଉଁ ସତ୍ୟ ଶିକ୍ଷା
ଆଜୀବନ ତହିଁ କରିଥିବ ଦୀକ୍ଷା ।
ତୁମ୍ଭ ସାତ୍ତ୍ୱ ଭାବ ପ୍ରସ୍ଫୁରିତ ଆଶେ
ଦେଖୁ ଅଛି ଶୁଭ୍ର ପ୍ରଶାନ୍ତ ଆକାଶେ ।
ଦେଉଅଛି ଯେଉଁ ନୀରବ ପ୍ରେରଣା
ଅବଶ୍ୟ ଫଳିବ ଦିନେ ଅକଳନା ।
"ଯାହା ଖାଇଥିବ, ତୁମ୍ଭର ପେଟକୁ
ଯାହା ଥୋଇଥିବ ଭୋଗ ସେ ଖଣ୍ଡକୁ ;"
ଜାଣି ଏହି ନୀତି ଉଦର ତର୍ପଣେ
ଉଦ୍‌ଯୋଗୀ ସଦା ଥାଅ ଶୁଦ୍ଧମନେ ।
ନିଜଠାରୁ ବଳି ପରମନ ତୋଷ
କରି ଲଭୁଥିଲ ବେଶୀ ପରିତୋଷ ।
ବିଧିରେ ସ୍ୱକରେ ପରିପାକ କରି
ଭୁଞ୍ଜାଇ ଅତିଥି ମନ ନିଅ ହରି ।
ବସନ ଭୂଷଣେ ନ ଥିଲା ଆଦର
ଭଲମନ୍ଦେ ସଦା ଥିଲ ନିର୍ବିକାର ।
ଶାସ୍ତ୍ର ପାଠେ ସଦା ନିତ୍ୟଯୁକ୍ତ ଥାଇ
ସମସ୍ତ ତୁମ୍ଭର ଦିଅ ଦେ ବତାଇ ।

ଏତେ ଗୁଣଶାଳୀ ଯେତେ ଭରି କେବେ
ଅହଙ୍କାର ମାତ୍ର ନଥିଲା ତ ଲବେ ।

କିସୁନ୍ଦର ଠଣ ସୁନ୍ଦର ଆକୃତି
ତା ତହୁଁ ସୁନ୍ଦର ମଧୁର ପ୍ରକୃତି ।

ଦେଖିଲେ ପଣ୍ଡିତ ମନେ ଗଣପତି
ବିଦ୍ୟାର ଭଣ୍ଡାର ବୋଲି ଯେ ଗଣତି

ଚିତାନଳେ ବନ୍ଧୁ ମାଟି ଦେହ ତବ
ହେଲେହେଁ ପାଉଁଶ ପୁଣି ଅଭିନବ ।

ଦିବ୍ୟଦେହ ତବ ଧୂମ୍ରଗତି ଯାନେ
ଆଶ୍ରାକଲା ସତ୍ୟ ସ୍ୱର୍ଗ ଅଭିଯାନେ ।

ରହିଛୁ ଆନନ୍ଦେ ମହାନନ୍ଦ କୋଳେ
ମହାପୂର୍ଣ୍ଣାନନ୍ଦ ସୁଲସେ ବହେଲେ ।
ବଙ୍ଗବାସୀ ହରିବଲ୍ଲଭ ଉତ୍କଳ
ପନ୍ରେ ଥାଇ ସର୍ବଚିନ୍ତା ଅରମ୍ଭିଲ ।
କଲିକତା ପ୍ରେସିଡେନ୍ସି କଲେଜରେ
ପଢ଼ି ପାଠ ହେଲ ଡାକ୍ତର ପରେ ।
ବଳତ ପାଶ୍ଚାତ୍ୟ ନିକେତର ଖେଳେ
ଥିଲ ଅଦ୍ୱିତୀୟ ଗୋଲ୍ଡ ମେଡେଲେ ।
ଶିକ୍ଷାଶେଷେ ଯେଉଁ ରଚିଲ ସଂସାର
ଜୀବନେ ତୁମ୍ଭର ହେଲ ତା ଅସାର ।
ସ୍ଥାପି ନିଜ ଗୃହେ ଛାପାଖାନା ଏକା
ଛୁଟାଇଲ ନବ ମୁକୁର ପତ୍ରିକା ।
ବାଣୀ ସେବାରେ ଲେଖକଙ୍କୁ ଡାକି
ଦେଲ ଉନ୍ମାଦନା ଲେଖକମାନଙ୍କ !
ନବ ପୁରାତନ ଗ୍ରନ୍ଥମାଳା ଆଣି
ନବସାଜ ତାକୁ ଦେଲ ନୂଆ ଠାଣି
ବାଣୀସେବା ଦେବସେବାରେ ସତତ
ବ୍ରତୀ ହେବାଲାଗି କଲ ମହାବ୍ରତ ।
ଯୋଗ୍ୟ ଲେଖକଙ୍କ ସୁଲେଖାବଳୀରେ
ଭରିଲ ମୁକୁର ପତ୍ରିକା-କଳିରେ ।
ଲେଖକ ସମାଜେ ଦେଲ ଉନ୍ମାଦନା
ନବ ଚିନ୍ତାଧାର ନବୀନ କଳ୍ପନା ।
ଉତ୍କଳ ଗଗନେ ନାଟକେ ହୋଇ ରବି
ଗଢ଼ିଲ ମାରବେ ନବ ନବ କବି ।
ଉତ୍କଳର ଆଜି ଆସିଛି ସୁଦିନ
ଭାରତ ତୁମ୍ଭର ହୋଇଛି ସ୍ୱାଧୀନ ।
ଯାଇଛି ବିଦେଶୀ ଦେଇ ସ୍ୱାଧୀନତା
ଉଠିଅଛି ଦେଶ ଛାଡ଼ି ବିଭିନ୍ନତା ।

ତୁମ୍ଭଭଳି ଧ୍ୟାନୀ ମାନୀ ଯୋଗୀଙ୍କର
ଉପସ୍ଥିତ, ହୋଇଥାନ୍ତା ସୁଖକର ।
ସାଧୁଥାନ୍ତ କେତେ ସାଧନା ଦେଶରେ
ନବାଲୋକ ଦେଇ ଅନ୍ଧାର ଶେଷରେ ।
ଜାଗ୍ରତ କରାଇ ସବୁ ଯୁବକ ସମାଜେ
ଗଢ଼ୁଥାନ୍ତ ନବ୍ୟ ଉପଦେଶ ବ୍ୟାଜେ ।
ଅନ୍ତରଙ୍କତର ସେସବୁ କଳ୍ପନା
ରହିଲା ଗୁପତେ ହୋଇ ଜଳପନା ।
ସେହି ସବୁକଥା ଆଜି କି ସୁନ୍ଦର
ମନେଥିବ ତବ ଭୁରି ଭୁବନ୍ତର ।
ଯାଇ ରହିଅଛ ବନ୍ଧୁ ଯେଉଁଦେଶେ
ଏ ମର୍ତ୍ତ୍ୟ ସମ୍ବାଦ ଯାଏ କି ସେ ଦେଶେ ।

ବାୟୁ ମଣ୍ଡଳର ମଧ୍ୟେ କି ସେ ସ୍ଥଳ
ଅବା ଅନ୍ତରୀକ୍ଷେ ଅଗମ୍ୟ ଅଚଳ ।

ଅବା ମୃତଲୋକ ବୋଲନ୍ତି ଯାହାକୁ
ଆଶ୍ରିଛ କି ବନ୍ଧୁ ଶେଷରେ ତାହାକୁ ;
ଆସିଥିଲ ଯହିଁ ଯାଇଛ କି ତହିଁ
ଭୁଲିବଣି ମର୍ତ୍ତ୍ୟ ସ୍ୱର୍ଗପୁରେ ରହି ।
ଦେଖ ବା ନଦେଖ ଜାଣ ବା ନଜାଣ
ସ୍ମୃତି ତବ ଏଥି ଅଛିଲଟି ଜାଣ ।
ସ୍ଥୂଳ ମାଟି ଦେହ ମିଶିଛି ମାଟିରେ
ଥାଅ ଦିବ୍ୟଦେହେ ସୁପରିପାଟିରେ ।
ବୋଲନ୍ତି ଜଗତେ ମୃତ୍ୟୁ ବୋଲି ଯାହା
ସୋପାନ ସିନା ସେ ଭବନ୍ତରେ ତାହା ।
ସଦା ଦିବ୍ୟଜ୍ଞାନ ପ୍ରଭାବୁ ବଞ୍ଚିତ
ନର ସ୍ଥୂଳ ତାହା ବୁଝେ କି କିଞ୍ଚିତ ।
ଆସିଥିଲ ଦେବ କିଛିଦିନ ପାଇଁ
ବୁଝି ମର୍ତ୍ତ୍ୟଦୁଃଖ ଚାଲିଗଲ ଯାଇ ।

କେବେ ହେଲେ ତବ ଷଣେ ଅବସର
ମର୍ତ୍ତ୍ୟକଥା ମନେ କରିବ ନାହିଁ ।
ଅପାର ଏ ଦୁଃଖ ହେବାଲଗି ପାର
ଦେବ ନରଲୋକେ ଅଭୟ ବିତରି ।
ଭକ୍ତି ସ୍ନେହଗୁଚ୍ଛ ପ୍ରଣିପାତ ଦେଇ
ରହିଲି ନୀରବ ଆଶୀର୍ବାଦ ନେଇ ।

———

[ ଏହି କବିତା ସମ୍ପର୍କରେ ଅନୁକୂଳ ଓ ପ୍ରଶଂସାମୂଳକ ଅଭିମତ ଦେଇ ଖୋର୍ଦ୍ଧା ହାଇସ୍କୁଲର ଭୂତପୂର୍ବ ହେଡ଼ମାଷ୍ଟର ଓ ସୁଲେଖକ ୰ ବାଙ୍କନିଧି ପଟ୍ଟନାୟକ ବ୍ରଜସୁନ୍ଦରଙ୍କ ସମ୍ପର୍କରେ ଯାହା ଉଲ୍ଲେଖ କରିଥିଲେ ତାହା ପ୍ରାସଙ୍ଗିକ ମନେ ହେବାରୁ ଏଠାରେ ପ୍ରଦତ୍ତ ହେଲା—ସଂପାଦକ ]

ମୁଁ କେତେକ କ୍ଷେତ୍ରରେ ବ୍ରଜବାବୁଙ୍କ ସମ୍ପର୍କରେ ଆସି ତାଙ୍କର ବହୁ ସଦଗୁଣାବଳୀର ପରିଚୟ ପାଇଅଛି । ତାଙ୍କର ଅକୃତ୍ରିମ ସ୍ନେହ ଏପର୍ଯ୍ୟନ୍ତ ମୋର ହୃଦୟରୁ ଲିଭିନାହିଁ କି ଲିଭିବ ନାହିଁ । ବ୍ରଜବାବୁ ଉତ୍କଳର ରାଜନୈତିକ । ସାମାଜିକ ଓ ସାହିତ୍ୟିକ କ୍ଷେତ୍ରରେ ଗୋଟିଏ ବିଶିଷ୍ଟ ସ୍ଥାନ ଅଧିକାର କରିଥିଲେ । ଏଥିପାଇଁ ସେ ଉତ୍କଳର ଚିରସ୍ମରଣୀୟ । ତାଙ୍କର ଜୀବନୀ ଉତ୍କଳର ଅର୍ଦ୍ଧ ଶତାବ୍ଦୀର ଇତିହାସ କହିଲେ ଅତ୍ୟୁକ୍ତି ହେବ ନାହିଁ । ଏପର୍ଯ୍ୟନ୍ତ ତାଙ୍କର ଜୀବନଚରିତ ଖଣ୍ଡିଏ ଲେଖାହୋଇ ପାରିନଥିବା ବଡ଼ ପରିତାପର କଥା ।

ଶ୍ରୀ ବାଙ୍କନିଧି ପଟ୍ଟନାୟକ

# ପ୍ରିୟଦର୍ଶୀ ବ୍ରଜସୁନ୍ଦର

## ବିଦ୍ୟୁତ୍‌ପ୍ରଭା ଦେବୀ

ଅତୁଳ ସମ୍ପଦ କୋଡ଼େ
          ଯଦି ଅବା ହୋଇଥିଲ ଜାତ
ବିଳାସ ବ୍ୟସନେ କିନ୍ତୁ
          ମଜ୍ଜି ନାହିଁ ତବ ଧୀର ଚିତ୍ତ ।
ଲାଗିଥିଲା ପ୍ରାଣ ତବ
          ଅନୁକ୍ଷଣେ ଭାରତୀ ସେବାରେ,
ତରୁଣ ଭାବୁକ ହୃଦେ
          ନବ ନବ ପ୍ରେରଣା ଦେବାରେ ।
ମାନସେ ନ ରଖି ତିଳେ
          ପାର୍ଥିବ ଏ ସମ୍ପଦର ମୋହ
ବୁହାଇ ଦେଇଛ ଦେଶେ
          ପ୍ରଗତିର ସାରସ୍ୱତ ସୁଅ
ଜାତିର ଉନ୍ନତି କେତେ
          ପ୍ରତିଫଳେ ସାହିତ୍ୟ-ଦର୍ପଣେ,
ପ୍ରତ୍ୟକ୍ଷେ ତା' ଦେଖାଇଲ
          'ମୁକୁର'ର ଶୁଭ ସମ୍ପାଦନ

ନବୀନ ଉତ୍ସାହେ ମାତି
　　　　ଫଳେ ତାର ଅସଂଖ୍ୟ ତରୁଣ
ନବ ଯୁଗେ ନବାଲୋକେ
　　　　ସାରାଦେଶେ କଲ ବିକୀରଣ ।
ପ୍ରିୟଭକ୍ତେ ସର୍ବଜନେ
　　　　ସମଭାବେ ବାନ୍ଧିଲ ସ୍ନେହେ
କରୁଥିଲ ପ୍ରାଣ ଆହ୍ୱାନ
　　　　ବାଣୀ ସେବା ପାଇଁ ଅହରହ ।
ପଟ୍ଟଶିଷ୍ୟ ରୂପେ ତୁମେ
　　　　ଅନୁସରି 'ମଧୁ' ମଧୁ-ପଥ,
ଉତ୍କଳ ଏକୀକରଣେ
　　　　କରିଥିଲ ଜୀବନର ବ୍ରତ ।
ପୂର୍ଣ୍ଣାଙ୍ଗ ଜନନୀ ମୁଖ
　　　　ଦେଖିବାକୁ ଚିନ୍ତିକଲି ଥାଳ
ନ ପୂରୁଣୁ ଆଶା ତବ
　　　　କାହିଁ ଆସି ଟାଣିନେଲା କାଳ ।
ସ୍ୱର୍ଗେ ଥାଇ ହେ ଦେବ
　　　　ବନ୍ଦନୀୟ 'ମଧୁ' ଗୁରୁସାଥେ
ଆଶୀର୍ବାଦ-ପୁଷ୍ପ ବୃଷ୍ଟି
　　　　କର ଏହି ଦେଶବାସୀ ମାଥେ ।
ବୃହତ୍ତର ଉତ୍କଳର
　　　　ନର ନାରୀ, କୋଟି ସୁତ ସୁତା
ବନ୍ଦି ଦେଶ ମାତା-ପଦ
　　　　ସମକଣ୍ଠେ ଗାଇ ତବ ଗାଥା—
ଦେଇ ତବ ଆଦର୍ଶ
　　　　ଲାଗିଯାନ୍ତୁ ସ୍ୱଦେଶ କରମେ
ତୁମରି ଉଦ୍ଦେଶ୍ୟେ ଦେବ
　　　　ଭକ୍ତିଭରେ ସୁନ୍ଦରୁଁ ପ୍ରଣମେଁ ।

×○×

# ଅଭିଭାଷଣ

ତା ୪।୫।୧୯୬୨ ରିଖ ଶନିବାର ଦିନ କଟକ ଶ୍ରୀରାମଚନ୍ଦ୍ର ଭବନରେ ଉତ୍କଳ ସାହିତ୍ୟ ସମାଜ ପକ୍ଷରୁ ପରଲୋକଗତ ସାହିତ୍ୟିକ ବ୍ରଜସୁନ୍ଦର ଦାସଙ୍କ ପ୍ରତିକୃତି ଉନ୍ମୋଚିତ ହୋଇଥିଲା ।

ଓଡ଼ିଶାର ତତ୍କାଳୀନ ବିକାଶ ମନ୍ତ୍ରୀ ଶ୍ରୀଯୁକ୍ତ ରାଧାନାଥ ରଥ ଏହି ପ୍ରତିକୃତି ଉନ୍ମୋଚନ କରିଥିଲେ ଏବଂ ଏହି ଉପଲକ୍ଷେ ଅନୁଷ୍ଠିତ ସଭାରେ ସଭାପତିତ୍ୱ କରି ଯେଉଁ ଅଭିଭାଷଣ ଦେଇଥିଲେ, ତାହା ଏଠାରେ ପ୍ରଦତ୍ତ ହେଲ—ସଂପାଦକ

## ସଭାପତି—ଶ୍ରୀଯୁକ୍ତ ରାଧାନାଥ ରଥ—

ବ୍ରଜସୁନ୍ଦର ଦାସଙ୍କ ତୈଳଚିତ୍ର ଶ୍ରୀରାମଚନ୍ଦ୍ର ଭବନରେ ରକ୍ଷା କରିବାଦ୍ୱାରା ଆଜି ଉତ୍କଳ ସାହିତ୍ୟ ସମାଜର ପ୍ରକୃତ ପ୍ରତିଷ୍ଠା ହେଲ ବୋଲିବାକୁ ହେବ । ଉତ୍କଳ ସାହିତ୍ୟ ସମାଜର ନିୟମାବଳୀ ଗଠନରେ ବ୍ରଜସୁନ୍ଦର ବାବୁ ଅନ୍ୟତମ ପ୍ରଧାନ ବ୍ୟକ୍ତି ଥିଲେ । ଏଣୁ ସେ ଉତ୍କଳ ସାହିତ୍ୟ ସମାଜର ଅନ୍ୟତମ ଜନ୍ମଦାତା । ଓଡ଼ିଆ ଭାଷା ଓ ସାହିତ୍ୟର ଇତିହାସ ସଂକଳନର ପ୍ରସ୍ତାବ ବ୍ରଜସୁନ୍ଦରବାବୁ ପ୍ରଥମେ କରିଥିଲେ । ଉତ୍କଳ ସମ୍ମିଳନୀର ଇତିହାସ ଜାଣିଥିବା ଲୋକେ ଅବଶ୍ୟ ଅନୁଭବ କରୁଥିବେ ଯେ ବ୍ରଜ, ସୁନ୍ଦର ବାବୁ କିପରି ଏହାର ଅନ୍ୟତମ ପ୍ରଧାନ ଉଦ୍ୟୋକ୍ତା ଓ କର୍ମୀ ଥିଲେ । ଉତ୍କଳ ସମ୍ମିଳନୀରେ ଗୃହୀତ ଦୁଇଟି ପ୍ରସ୍ତାବ ପାଠକରି ଶ୍ରୀଯୁକ୍ତ ରଥ କହିଲେ ଯେ, ବ୍ରଜସୁନ୍ଦର ବାବୁହିଁ ଏ ଦୁଇଟି ପ୍ରସ୍ତାବର ସ୍ରଷ୍ଟା ।

ଓଡ଼ିଆ ଭାଷାର ଅଭିବୃଦ୍ଧି ଓ ବିଚ୍ଛିନ୍ନ ଓଡ଼ିଆଭାଷୀ ଅଞ୍ଚଳର ଏକତ୍ରୀକରଣ ପ୍ରସ୍ତାବ ମୂଳରେ ଥିଲେ ବ୍ରଜସୁନ୍ଦର ବାବୁ । ୧୮୮୦ ମସିହାରେ ତାଙ୍କର ଜନ୍ମ ଓ ୧୯୭୪ରେ ତାଙ୍କର ପରଲୋକ ହୋଇଛି । ଦଭିନ୍ନ କମିଟି ଆଗରେ ଓଡ଼ିଆଭାଷୀ ଅଞ୍ଚଳଗୁଡ଼ିକ ଏକତ୍ରିତ କରି ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ସମ୍ବନ୍ଧୀୟ ଯେତେଗୁଡ଼ିଏ ସ୍ମାରକପତ୍ର ବା ପୁସ୍ତିକା ଉପସ୍ଥାପିତ କରାଯାଇଛି, ତାହା ରଚନା କରିବାରେ ବ୍ରଜସୁନ୍ଦର ବାବୁଙ୍କର ହାତ ଥିଲା । ୧୯୧୩ ମସିହାରେ ଉତ୍କଳ ସମ୍ମିଳନୀରେ ସତ୍ୟବାଦୀ ସ୍କୁଲକୁ ସାହାଯ୍ୟଦାନ ସମ୍ବନ୍ଧରେ ମଧ୍ୟ ସେ ଏକ ସ୍ୱତନ୍ତ୍ର ପ୍ରସ୍ତାବ ଆଣିଥିଲେ । ୧୯୨୭ ମସିହାରେ ଓଡ଼ିଶାର ବନ୍ୟା ଓ ତହିଁର ପ୍ରତିକାର ସମ୍ବନ୍ଧରେ ବିହାର-ଓଡ଼ିଶା ବ୍ୟବସ୍ଥାପକସଭାରେ ସେ ଯେଉଁ ବକ୍ତୃତା ଦେଇଥିଲେ, ତାହା ଉଲ୍ଲେଖଯୋଗ୍ୟ । ସେ କେବଳ ଜଣେ ସାହିତ୍ୟିକ ଓ ସାହିତ୍ୟ-ରସିକ ନୁହନ୍ତି; ଓଡ଼ିଆ ଭାଷା ଓ ସାହିତ୍ୟର ପ୍ରସାରରେ ସେ ଥିଲେ ଅଗ୍ରଣୀ । ତାଙ୍କର 'ମୁକୁର' ମାସିକ ପତ୍ରିକା ଏକ ଆଦର୍ଶ ସାହିତ୍ୟ ପତ୍ରିକା ଥିଲା । ପ୍ରତ୍ୟକ୍ଷ ରାଜନୀତିରେ ସେ ଯୋଗଦେଇ ନଥିଲେ ସୁଦ୍ଧା ଅନ୍ତରରେ ସେ ଥିଲେ ଉଗ୍ର ଜାତୀୟତାବାଦୀ । ୧୯୧୦ ମସିହାରେ ବଙ୍ଗଳାର ସ୍ୱଦେଶୀ ଆନ୍ଦୋଳନ ଚାଲିଥିଲାବେଳେ ଏହି ଆନ୍ଦୋଳନର ଅନ୍ୟତମ ତରୁଣ ନେତା କ୍ଷୁଦିରାମ ଦିନକପାଇଁ ଆସି ବ୍ରଜସୁନ୍ଦର ବାବୁଙ୍କ ଏହି କମଚଉଡ଼ାସ୍ଥ ବାସଭବନରେ ଥିଲେ ଓ ଏଠାରେ ସ୍ୱଦେଶୀ ଆନ୍ଦୋଳନର ପ୍ରଚାର କରିଯାଇଥିଲେ । ସେ ଅତି ସ୍ନେହପ୍ରବଣ ଓ ବହୁମୁଖୀ ପ୍ରତିଭାସମ୍ପନ୍ନ ପୁରୁଷ ଥିଲେ । ତାଙ୍କର ପ୍ରକାଶିତ ବହୁ ରଚନାବଳୀରୁ ଓଡ଼ିଆ ଜାତିର ଏକ ଇତିହାସ ମିଳିପାରିବ । ବ୍ରଜସୁନ୍ଦରବାବୁ ଉତ୍କଳମଣି ଗୋପବନ୍ଧୁଙ୍କର ଅନ୍ତରଙ୍ଗ ବନ୍ଧୁ ଥିଲେ ଏବଂ ଦେଶ ମିଶ୍ରଣ, ଓଡ଼ିଆ ଭାଷା ଓ ସାହିତ୍ୟର ପ୍ରସାର, ଉତ୍କଳୀୟ ଆନ୍ଦୋଳନ, ଶିକ୍ଷାପ୍ରସାର ଆଦି ସବୁ କାର୍ଯ୍ୟ ସହିତ ଘନିଷ୍ଠ ଭାବରେ ସଂପୃକ୍ତ ଥିଲେ ।

ଶ୍ରୀଯୁକ୍ତ ରଥଙ୍କ ବ୍ୟତୀତ ଉତ୍କଳର ଆର୍ତ୍ତବଲ୍ଲଭ ମହାନ୍ତି, ଶ୍ରୀ ନବକିଶୋର ଦାସ, ଶ୍ରୀମତୀ ସରଳା ଦେବୀ, ବ୍ରଜସୁନ୍ଦର ବାବୁଙ୍କ କନ୍ୟା ଶ୍ରୀମତୀ ପୁଣ୍ୟପ୍ରଭା ଦାସ ସ୍ୱର୍ଗତ ବ୍ରଜସୁନ୍ଦରଙ୍କ ମହନୀୟ କାର୍ଯ୍ୟ ଓ ଗୁଣାବଳୀ ବ୍ୟାଖ୍ୟାନ କରି ଭାଷଣ ଦେଇଥିଲେ ।



# ସାହିତ୍ୟ-ସେବୀ ବ୍ରଜସୁନ୍ଦର*

## ଶ୍ରୀ ଜାନକୀ ବଲ୍ଲଭ ମହାନ୍ତି

ଊନବିଂଶ ଶତାବ୍ଦୀର ଶେଷ ଭାଗରେ ଉତ୍କଳରେ ଯେଉଁ ଜାତୀୟତା-ବୋଧର ଜାଗରଣ ଦେଖା ଦେଇଥିଲା ତାହାର ଆଦର୍ଶ ଥିଲା ଜନ୍ମଭୂମି ଓ ମାତୃଭାଷାକୁ ଜନନୀ ରୂପେ ଗ୍ରହଣ କରି ତାହାର ସେବା କରିବା । "ମାତୃଭୂମି, ମାତୃଭାଷା ଉଭୟେ ଜନନୀ— ସେବ ତାଙ୍କୁ ଭକ୍ତିଭରେ ଦିବସ ରଜନୀ । ଏ ମାନବ ଜନ୍ମ ହେଉ ସଫଳ ମୋହର"—ଏହି ଆଦର୍ଶରେ ଅନୁପ୍ରାଣିତ ହୋଇ ସେ ଯୁଗର ବହୁ ବରିଷ୍ଠ ବ୍ୟକ୍ତି ଦେଶର ଓ ସାହିତ୍ୟର ଉନ୍ନତି ଲାଗି ସାଧ୍ୟାତୀତ ନିଷ୍ଠା ଦେଖାଇ ଯାହା ସାଧନା କରିଯାଇ ଅଛନ୍ତି, ଆଜି ଆମ୍ଭେମାନେ ତାହାର ସୁଫଳ ଭୋଗ କରୁଅଛୁ । ବ୍ରଜ ସୁନ୍ଦର ଜନ୍ମଭୂମିର ଦୁର୍ଦ୍ଦଶା ଅପନୋଦନ ଲାଗି ଯେପରି ଜନହିତକର କାର୍ଯ୍ୟରେ ତଥା ବିଚ୍ଛିନ୍ନାଞ୍ଚଳର ଏକତ୍ରୀକରଣରେ ଆତ୍ମ ନିୟୋଗ କରିଥିଲେ, ସେହିପରି ଓଡ଼ିଆ ସାହିତ୍ୟର ଉନ୍ନତି ଲାଗି ମଧ୍ୟ ବଦ୍ଧପରିକର ହୋଇଥିଲେ ।

ବି.ଏ. ପାସ କଲା ବେଳକୁ ତାଙ୍କର ବୟସ ବାଇଶ ବର୍ଷ । କୌଣସି ସରକାରୀ ଚାକିରୀ ଗ୍ରହଣ ନ କରି ସେ ଦେଶ ସେବାକୁ ହିଁ ଜୀବନାଦର୍ଶ ଭାବେ ଗ୍ରହଣ କରିନେଲେ । ଠିକ୍ ଏହି ସମୟକୁ କଟକରେ ଉତ୍କଳ ସମ୍ମିଳନୀ ପ୍ରତିଷ୍ଠା ହେଲା । ବ୍ରଜ ସୁନ୍ଦର ଏହି କାର୍ଯ୍ୟରେ ଆପଣାକୁ ପୂର୍ଣ୍ଣ ପ୍ରାଣରେ

*ଜୀବନ ଚରିତର କିୟଦଂଶ

ନିଯୋଜିତ କରିଦେଲେ । ମାତ୍ର ସାହିତ୍ୟ ଉନ୍ନତି ବିଷୟ ସେ ବିସ୍ମୃତ ହୋଇ ନ ଥାନ୍ତି । ଓଡ଼ିଶାରେ ସେତେବେଳେ ଏକମାତ୍ର ସାହିତ୍ୟ ପତ୍ରିକା ଥିଲା 'ଉତ୍କଳ ସାହିତ୍ୟ' । ବହୁ ଲେଖକଙ୍କର ଲେଖା ସେଇ ଗୋଟିଏ ମାତ୍ର ପତ୍ରିକାରେ ପ୍ରକାଶ ପାଇ ପାରୁ ନଥିଲା । ନିଜେ ଲେଖିବା ବ୍ୟତୀତ ତରୁଣ ଲେଖକମାନଙ୍କ ଲାଗି ସାହିତ୍ୟ ସୃଷ୍ଟିର କ୍ଷେତ୍ର ପ୍ରସ୍ତୁତ କରାଇବା ଆବଶ୍ୟକ । ବନ୍ଧୁମାନଙ୍କ ସହିତ ଏ ବିଷୟରେ ନାନା ଆଲୋଚନା ହୁଏ । ଶେଷରେ ଏକ ସାହିତ୍ୟ ପତ୍ରିକା ପ୍ରକାଶ କରିବା ଲାଗି ସେ ସ୍ଥିର କଲେ । ଏହିପରି ଭାବେ ୧୯୦୫ ମସିହାରେ ବ୍ରଜ ସୁନ୍ଦରଙ୍କ ସମ୍ପାଦକତ୍ୱରେ 'ମୁକୁର' ପତ୍ରିକା କଟକରୁ ପ୍ରକାଶ ପାଇଲା । ସେତେବେଳେ ତାହାଙ୍କୁ ଏଇ କାର୍ଯ୍ୟରେ ଉତ୍ସାହିତ ଓ ସହାୟତା କରିଥିଲେ ପଣ୍ଡିତ ଗୋପବନ୍ଧୁ ଦାଶ, ଅଭିରାମ ଭଞ୍ଜ ଓ କାମପାଳ ମିଶ୍ର ।

ଆର୍ଥିକ କ୍ଷତି ସତ୍ତ୍ୱେ ସେ ପ୍ରାୟ ପଚିଶ ବର୍ଷ ପର୍ଯ୍ୟନ୍ତ 'ମୁକୁର'କୁ ବଞ୍ଚାଇ ରଖି ପାରିଥିଲେ । ମୁକୁର ପତ୍ରିକାର ଏଇ ପଚିଶ ବର୍ଷର ଇତିହାସ ଓଡ଼ିଆ ସାହିତ୍ୟର ଏକ ଗୌରବୋଜ୍ଜ୍ୱଳ ଅଧ୍ୟାୟ । ମୁକୁର ପତ୍ରିକା ଦ୍ୱାରା ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାଗରେ ବିକାଶ ସାଧିତ ହୋଇଅଛି । ଏହି ପତ୍ରିକାକୁ ଆଶ୍ରୟ କରି ବହୁ ସାହିତ୍ୟିକ-ପ୍ରତିଭାର ଉନ୍‌ମେଷ ଓ ବିକାଶ ସାଧିତ ହୋଇଅଛି । ପତ୍ରିକା ପ୍ରକାଶ କରି ଲାଭବାନ ହେବା ବା ଖ୍ୟାତି ଅର୍ଜନ କରିବା ବ୍ରଜ ସୁନ୍ଦରଙ୍କ ଅଭିପ୍ରାୟ ନଥିଲା । ପରନ୍ତୁ ଏହି ପତ୍ରିକା ପାଇଁ ତାଙ୍କୁ ପ୍ରଚୁର କ୍ଷତିଗ୍ରସ୍ତ ହେବାକୁ ପଡ଼ିଛି । ତଥାପି ସେ ଓଡ଼ିଆ ସାହିତ୍ୟର ଉନ୍ନତି ଲାଗି ଓ ବିବିଧ ସାହିତ୍ୟ ସୃଷ୍ଟିଲାଗି ଓଡିଶାର ଲେଖକ-ମାନଙ୍କୁ ନାନା ଭାବରେ ଉତ୍ସାହିତ କରୁଥିଲେ । ମୁକୁର ପତ୍ରିକାର ଲେଖକମାନଙ୍କୁ ସେ ସାମାନ୍ୟ ପାରିଶ୍ରମିକ ମଧ୍ୟ ଦେଉଥିଲେ । ବ୍ରଜ ସୁନ୍ଦର ହିଁ ସାହିତ୍ୟ ରଚନା ଲାଗି ଲେଖକମାନଙ୍କୁ ପାରିଶ୍ରମିକ ଦେବା ପ୍ରଥା ପ୍ରଥମେ ଓଡ଼ିଶାରେ ପ୍ରବର୍ତ୍ତନ କରିଥିଲେ ।

ଓଡ଼ିଶାର ବହୁ କୃତବିଦ୍ୟ ଲେଖକ ସେମାନଙ୍କ ସାହିତ୍ୟ ସୃଷ୍ଟି ଲାଗି ବ୍ରଜସୁନ୍ଦରଙ୍କ ନିକଟରେ କୃତଜ୍ଞ । ଉତ୍କଳର ବରପୁତ୍ରମାନଙ୍କ ଚରିତ୍ରକୁ ମୁଦ୍ର ପଦ୍ୟାକାରରେ ଲେଖିବାକୁ ସେ ତାଙ୍କର ଘନିଷ୍ଠ ବନ୍ଧୁ ପଣ୍ଡିତ ଗୋପବନ୍ଧୁଙ୍କୁ ପ୍ରବର୍ତ୍ତାଇ ଥିଲେ । ବ୍ରଜ ସୁନ୍ଦରଙ୍କ ଦ୍ୱାରା ଅନୁରୁଦ୍ଧ ହୋଇ ଗୋପବନ୍ଧୁ 'ସାରଳା ଦାସ', 'ବଳରାମ ଦାସ', 'ଉପେନ୍ଦ୍ର ଭଞ୍ଜ',

'ସାମନ୍ତ ଚନ୍ଦ୍ରଶେଖର' ପ୍ରଭୃତି ଯେଉଁସବୁ କବିତା ରଚନା କରିଥିଲେ, ସେଗୁଡ଼ିକ ଓଡ଼ିଆ ସାହିତ୍ୟର ଅମୂଲ୍ୟ ସମ୍ପଦ । ମୁକୁର ପତ୍ରିକାରେ ଗୋପବନ୍ଧୁଙ୍କର ଅଧିକାଂଶ କବିତା ପ୍ରକାଶ ପାଇଥିଲା । ବ୍ରଜ ସୁନ୍ଦରହିଁ ଗୋପବନ୍ଧୁଙ୍କ 'ସାହିତ୍ୟ ସାଧନାର ପ୍ରଥମୋଦ୍ୟମ' "ଅବକାଶ ଚିନ୍ତା" ପୁସ୍ତକଟି ପ୍ରଥମେ ପ୍ରକାଶ କରିଥିଲେ । ଗୋପବନ୍ଧୁଙ୍କ ବିୟୋଗ ପରେ 'ଅଶ୍ରୁ ତର୍ପଣ' ଶୀର୍ଷକ ସମ୍ପାଦକୀୟ ଲେଖି ବ୍ରଜ ସୁନ୍ଦର ଲେଖିଥିଲେ— "ଆମ୍ଭମାନଙ୍କ ଦ୍ୱାରା ଅନୁରୁଦ୍ଧ ହୋଇ ବର୍ଷାଧିକ କାଳ ସେ ଉତ୍କଳର ପ୍ରାଚୀନ ମହାତ୍ମାମାନଙ୍କର କ୍ଷୁଦ୍ର ଜୀବନୀ ବ୍ୟାଖ୍ୟାକାରରେ ଲେଖିଥିଲେ । ଆମ୍ଭେମାନେ ସେଥିଲାଗି ତାଙ୍କ ଠାରେ ଚିର ଋଣୀ । ଗୋପବନ୍ଧୁଙ୍କ ଲେଖନୀ-ପ୍ରସୂତ 'ଉତ୍କଳର ବ୍ୟାସ ଜଗନ୍ନାଥ ଦାସ', ପଂକ୍ତିରୁ 'ମୁକୁର'ର ଆରମ୍ଭ । ××× ତାହାଙ୍କ ଲେଖାର ଭଂଗୀରେ ମୁଗ୍ଧ ହୋଇ ଆମ୍ଭେମାନେ ତାଙ୍କର ସାହିତ୍ୟ ସାଧନାର ପ୍ରଥମୋଦ୍ୟମ "ଅବକାଶ ଚିନ୍ତା" ପ୍ରକାଶ କରିଥିଲୁ ।"—ଏହାପରେ ଆପଣାର ବନ୍ଧୁ ବତ୍ସଳତା, ଉଦାର ହୃଦୟବତ୍ତାର ପରିଚୟ ଦେଇ ସେ ଗୋପବନ୍ଧୁଙ୍କ ଉଦ୍ଦେଶ୍ୟରେ ଲେଖିଥିଲେ— 'ମୁକୁର' ଜନ୍ମରେ ତୁମ୍ଭେ ସହକାରୀ, ମୁକୁର ସ୍କୁଲକର ସହାଧ୍ୟାୟୀ, ବନ୍ଧୁ ଓ ସହକର୍ମୀ । ତୁମ୍ଭ ସହିତ ଶେଷ ଜୀବନରେ ମତଭେଦ ଘଟିଥିଲେ ହେଁ ମନ ଭେଦ ଘଟିନାହିଁ ।'

(ମୁକୁର ୨୩ଶ ଭାଗ ୩ୟ ସଂଖ୍ୟା—ଆଷାଢ଼ ୧୩୩୫)

ଏତଦ୍ ବ୍ୟତୀତ ୰କାମପାଳ ମିଶ୍ର, ୰ଚିନ୍ତାମଣି ମହାନ୍ତି, ୰ପାର୍ବତୀ ଚରଣ ଦାସ, ୰କୃଷ୍ଣ ମୋହନ, ୰ ଲକ୍ଷ୍ମୀକାନ୍ତ, ୰ଗୋପୀନାଥ ନନ୍ଦ ୰ଜଗବନ୍ଧୁ ସିଂହ, ବିପିନ ବିହାରୀ ରାୟ, ୰କୁନ୍ତଳା କୁମାରୀ ସାବତ, ବୀର କିଶୋର ଦାସ, ରମାରଂଜନ ମହାନ୍ତି ପ୍ରଭୃତି ବହୁ ଲେଖକଙ୍କୁ ସେ ଉତ୍ତରୋତ୍ତର ସାହିତ୍ୟ ରଚନା କରିବାକୁ ସମୁତ୍ସାହିତ କରି ଅଛନ୍ତି । ଜାତୀୟ କବି ବୀର କିଶୋରଙ୍କ ସ୍ୱଦେଶୀ ଭାବନା ସମ୍ବଳିତ ଗୀତିକବିତା ସଂଗ୍ରହ 'ମୋହନ ବଂଶୀ' ପୁସ୍ତକଟିକୁ ଯେତେବେଳେ କୌଣସି ପ୍ରକାଶକ ପ୍ରକାଶ କରିବାକୁ ସାହସୀ ହୋଇ ନଥିଲେ, ସ୍ୱାଧୀନଚେତା ବ୍ରଜ ସୁନ୍ଦର ନିର୍ଭୀକଭାବେ ତାହାକୁ ନିଜ ପ୍ରେସ୍‌ରେ ଛପାଇ ଦେଇଥିଲେ । କେବଳ ସମକାଳୀନ ଲେଖକମାନଙ୍କ ଲେଖାକୁ ସେ ପ୍ରକାଶିତ କରି କ୍ଷାନ୍ତ ହୋଇ ନାହାନ୍ତି, ଓଡ଼ିଶାର ପ୍ରାଚୀନ କବିମାନଙ୍କ ପୁସ୍ତକଗୁଡ଼ିକୁ ମୁଦ୍ରିତ

କରାଇବାରେ ମଧ୍ୟ ଥିଲ ତାଙ୍କର ଅସୀମ ଆଗ୍ରହ । ଏଣୁ ମୁକୁର ପ୍ରେସରୁ ସେ ରାମ ଦାସଙ୍କ ହରି ଭକ୍ତି ଚନ୍ଦ୍ରୋଦୟ, ଅଭିମନ୍ୟୁଙ୍କ ସୁଲକ୍ଷଣା କାବ୍ୟ, ଯଦୁମଣି ଗୀତାବଳୀ, ରାମ ଉପାଖ୍ୟାନ ପ୍ରଭୃତି ବହୁ ସଂଖ୍ୟକ ପୁସ୍ତକ ମୁଦ୍ରିତ ଓ ପ୍ରକାଶ କରାଇଥିଲେ ।

'ମୁକୁର' ଥିଲ ବ୍ରଜ ସୁନ୍ଦରଙ୍କ ସ୍ୱପ୍ନ । ମୁକୁର ପ୍ରଥମେ ପ୍ରକାଶିତ ହେବାବେଳେ ଏହାର ସ୍ୱତନ୍ତ୍ର ମୁଦ୍ରଣ ଯନ୍ତ୍ର ନଥିଲ । ପ୍ରାୟ ପାଞ୍ଚବର୍ଷ ପର୍ଯ୍ୟନ୍ତ ମୁକୁର, ମିଶନ୍ ପ୍ରେସରେ ମୁଦ୍ରିତ ହେଉଥିଲ । ୧୯୧୦ ମସିହାରେ ବ୍ରଜ ସୁନ୍ଦର ପୁରାତନ କମଳା ପ୍ରେସ୍ ନାମକ ଗୋଟିଏ ପ୍ରେସ୍ କିଣି ତାହାର ଶ୍ରୀବୃଦ୍ଧି ସାଧନ କରିଥିଲେ । ମୁକୁର ପ୍ରେସ୍ ପ୍ରତିଷ୍ଠିତ ହେବାପରେ ବ୍ରଜ ସୁନ୍ଦର କ୍ରମେ ଏହାର ସର୍ବାଙ୍ଗୀନ ଉନ୍ନତି ସାଧନରେ ଯତ୍ନଶୀଳ ହେଲେ । ଓଡ଼ିଆ ଟାଇପ୍ ଗୁଡିକ ସେତେବେଳେ ସୁଦୃଶ୍ୟ ନଥିଲ । ଉନ୍ନତ ରୁଚିସମ୍ପନ୍ନ ବ୍ରଜସୁନ୍ଦର ମୁଦ୍ରଣ କାର୍ଯ୍ୟରେ ନିୟୋଜିତ ହେଉଥିବା ସୀସା ଅକ୍ଷର ଗୁଡ଼ିକୁ ସୁନ୍ଦର, ସୁସ୍ପଷ୍ଟ ଓ ଚିତ୍ତାକର୍ଷକ କରିବାଲାଗି ସୁଦକ୍ଷ ଲୋକଙ୍କୁ ନିୟୋଜିତ କଲେ ଓ ଅଳ୍ପକାଳ ମଧ୍ୟରେ ଆପଣାର ଟାଇପ ଫାଉଣ୍ଡ୍ରୀରୁ ଉତ୍କୃଷ୍ଟ 'ଟାଇପ' ପ୍ରସ୍ତୁତ କରିବାରେ ସଫଳକାମ ହୋଇଥିଲେ । ସେତେବେଳେ ମୁକୁର ପ୍ରେସରେ ଉତ୍ପାଦିତ ଓ ବ୍ୟବହୃତ ଓଡ଼ିଆ ଟାଇପ୍ ଏବେ ମଧ୍ୟ ଉତ୍କୃଷ୍ଟତମ ଭାବେ ପରିଗଣିତ ହୋଇଥାଏ । ଏହାଠାରୁ ଉତ୍କୃଷ୍ଟ ଅକ୍ଷର ନମୁନା ପ୍ରସ୍ତୁତ କରିବାକୁ ଆଜି ପର୍ଯ୍ୟନ୍ତ କେହି କ୍ଷମହୋଇ ପାରିନାହାନ୍ତି । ସୌଷ୍ଠବସମ୍ପନ୍ନ ମୁଦ୍ରଣ ପରିପାଟୀ ଲାଗି ମୁକୁର ପ୍ରେସ୍ ଏକଦା ଅପ୍ରତିଦ୍ୱନ୍ଦୀ ଥିଲ । ପରବର୍ତ୍ତୀ କାଳରେ ମୁକୁର ପ୍ରେସ୍‌ରେ ଏକ ପୁସ୍ତକାଳୟ ମଧ୍ୟ ତାଙ୍କର ଉଦ୍ୟମରେ ସ୍ଥାପିତ ହୋଇଥିଲ ଓ ଏହି ମୁକୁର ପୁସ୍ତକାଳୟ ପକ୍ଷରୁ ସେପର୍ଯ୍ୟନ୍ତ ପ୍ରକାଶିତ ଓଡ଼ିଆ ପୁସ୍ତକମାନଙ୍କର ଏକ ପୂର୍ଣ୍ଣାଙ୍ଗ ତାଲିକା ସେ ପ୍ରଥମେ ପ୍ରସ୍ତୁତ କରି ପ୍ରକାଶ କରାଇଥିଲେ ।

ମୁଦ୍ରଣାଗାର ସହ ବ୍ରଜସୁନ୍ଦରଙ୍କ ସମ୍ପର୍କ ବଂଶାନୁକ୍ରମିକ କୁହାଯାଇ ପାରେ । ତାଙ୍କର ପିତାମହ, ଗଡ଼ଜାତ ମାହାଲର ଆସିଷ୍ଟାଣ୍ଟ ସୁପରିଣ୍ଟେଣ୍ଡେଣ୍ଟ ୰ହରେକୃଷ୍ଣ ଦାସ ଓ ତଦୀୟଭ୍ରାତା ୰ବଶସାନନ୍ଦ ଦାସ କଟକ ପ୍ରିଣ୍ଟିଂ କମ୍ପାନୀର ପ୍ରତିଷ୍ଠାତା ମାନଙ୍କ ମଧ୍ୟରୁ ଅନ୍ୟତମ । ଉତ୍କଳ ଦୀପିକାର ସମ୍ପାଦକ ଗୌରୀଶଙ୍କର ହିଁ ହରେକୃଷ୍ଣଙ୍କ ବିଷୟରେ ଏଣୁ ଲେଖିଥିଲେ—'ବାବୁ ହରେକୃଷ୍ଣ ଦାସ କଟକ ପ୍ରିଣ୍ଟିଂ କମ୍ପାନୀ ସ୍ଥାପନ

ବିଷୟରେ ଜଣେ ପ୍ରଧାନ ଉଦ୍ୟୋଗୀ ଓ ଜଣେ ପ୍ରଧାନ ଉଦ୍‌ଯୋଗୀ ଥିଲେ ।’

(ଉତ୍କଳ ଦୀପିକା ୧୮୭୮ ମସିହା ଜାନୁଆରୀ ୫ ତାରିଖ)

ଏବିଶ୍ୱନାଥଙ୍କ ଉଦ୍ୟମରେ ଏହି କମ୍ପାନୀର ସର୍ବବିଧ ଆର୍ଥିକ ବିକାଶ ସାଧିତ ହୋଇଥିଲା । ବ୍ରଜସୁନ୍ଦର ନିଜେ ମଧ୍ୟ ଦୀର୍ଘକାଳ କଟକ ପ୍ରିଣ୍ଟିଂ କମ୍ପାନୀର ଡ଼ିରେକ୍ଟର ଥିଲେ । ରାଜନୀତି କ୍ଷେତ୍ରରେ ଯୋଗ ନଦେଇଥିଲେ ସମ୍ଭବତଃ ବ୍ରଜସୁନ୍ଦରଙ୍କ ଜୀବନ ସାହିତ୍ୟ ଓ ସଙ୍ଗୀତ ଚର୍ଚ୍ଚା, ପତ୍ରିକା ପ୍ରକାଶନ ଓ ମୁଦ୍ରଣ ବିଷୟକ କାର୍ଯ୍ୟରେହିଁ ଆଜୀବନ ନିୟୋଜିତ ହୋଇଥାନ୍ତା । ମୃତ୍ୟୁପର୍ଯ୍ୟନ୍ତ ପ୍ରେସ୍ ସହିତ ତାଙ୍କର ସମ୍ପର୍କ ଅବିଚ୍ଛିନ୍ନ ରହିଥିଲା । ଓଡ଼ିଆ ମୁଦ୍ରଣ କଳାର ବିକାଶ ସାଧନକାରୀ ଭାବେ ତାଙ୍କର ନାମ ଅବଶ୍ୟ ସ୍ମରଣୀୟ ।

କଥା-ସାହିତ୍ୟ ଆଧୁନିକ ସାହିତ୍ୟର ଅନ୍ୟତମ ମୁଖ୍ୟ ବିଭବ । ଓଡ଼ିଆ କଥା ସାହିତ୍ୟ କ୍ଷେତ୍ରରେ ବ୍ରଜସୁନ୍ଦରଙ୍କ ପୋଷକତା ଓ ପ୍ରୋତ୍ସାହନ ସର୍ବଶେଷ ସ୍ମରଣୀୟ । ମୁକୁର ପ୍ରକାଶିତ ହେବା ସମୟରୁ ବ୍ରଜସୁନ୍ଦର କ୍ଷୁଦ୍ର ଗଳ୍ପ ରଚନା ଲାଗି ଲେଖକମାନଙ୍କୁ ଉତ୍ସାହ ଦେଇଥିଲେ । ସମ୍ଭବତଃ ବ୍ରଜ ସୁନ୍ଦରଙ୍କ ଦ୍ୱାରା ଅନୁରୁଦ୍ଧ ହୋଇ ଫକୀରମୋହନ ୧୯୦୫ମସିହାରୁ ଗଳ୍ପରଚନାରେ ସବିଶେଷ ମନୋନିବେଶ କରିଥିଲେ । ୧୯୧୩ ପର୍ଯ୍ୟନ୍ତ ଫକୀରମୋହନଙ୍କ ରଚିତ ‘ବାଲେଶ୍ୱର ଗିହାଜାନ’, ମୌନାମୌନ, ପୁନର୍ମୁଷିକୋଭବ, ଗଣ୍ଡିଯୁଅ ଅନନ୍ତ’, ଡାକ ମୁନ୍‌ସି, ପାଠୋଇ ବୋହୁ ପ୍ରଭୃତି ପ୍ରାୟ ସମସ୍ତ ଗଳ୍ପ ମୁକୁରରେ ପ୍ରକାଶିତ ହୋଇଅଛି । ଏହାଛଡ଼ା ଅନ୍ୟାନ୍ୟ ବିଶିଷ୍ଟ ଲେଖକମାନଙ୍କର ବହୁ ଗଳ୍ପ, ଉପନ୍ୟାସ ମଧ୍ୟ ମୁକୁରରେ ଧାରାବାହିକଭାବେ ପ୍ରକାଶପାଉଥିଲା ।

‘ଉତ୍କଳ ପ୍ରଭା’ ଓ ‘ଉତ୍କଳ ସାହିତ୍ୟ’ ପରେ ‘ମୁକୁର’ ପତ୍ରିକା ଓଡ଼ିଆ ଭାଷାର ତୃତୀୟ ସାହିତ୍ୟ ପତ୍ରିକାଭାବେ ଉଲ୍ଲେଖଯୋଗ୍ୟ । ଓଡ଼ିଆ ସାହିତ୍ୟ ବିକାଶରେ ଏହା ଦୀର୍ଘ ୨୫ ବର୍ଷ ଧରି ନିୟୋଜିତ ଥିଲା । ଓଡ଼ିଆ ସାହିତ୍ୟର ବହୁ ମୂଲ୍ୟବାନ୍ ରଚନାବଳୀ ଏହି ପତ୍ରିକାରେ ପ୍ରକାଶ ପାଇଛି । ତନ୍ମଧ୍ୟରୁ ପାର୍ବତୀଚରଣଙ୍କ ‘ଭକ୍ତକଥା’,‘ଗସ୍ପ ରାମାନନ୍ଦ’ ଜଗବନ୍ଧୁ ସିଂହଙ୍କର ‘ପ୍ରାଚୀନ ଉତ୍କଳ’,ଗଙ୍ଗାଧରଙ୍କର ‘ତପସ୍ୱିନୀ’,‘ଭାରତୀ ଭାବନା’, ଅନନ୍ତ ତ୍ରିପାଠୀଙ୍କ ‘ହଂସଦୂତ’, ମୃତ୍ୟୁଞ୍ଜୟ ରଥଙ୍କର ‘ସାରଳା

ଚରିତ', ଗୋପୀନାଥ ନନ୍ଦଙ୍କର 'ଭାଷାତାତ୍ତ୍ୱିକ ଆଲୋଚନା', ଓ 'ଶ୍ରୀମଦ୍ ରାମାୟଣ ସମାଲୋଚନା, ଗୋପୀନାଥ ସିଂହଙ୍କର 'କାରଭାର୍ଣ୍ଣନୀୟ', ଛକଡ଼ି ମହାନ୍ତିଙ୍କର 'ଭାରତୀୟ ଶିଳ୍ପ', ନୀଳକଣ୍ଠଙ୍କର 'ଦାସ ନାୟକ', 'ମୋ ନାଶ' ଜଗଦାନନ୍ଦଙ୍କର ମହାଯାତ୍ରା ସମାଲୋଚନା, ଅମର ବଲ୍ଲଭଙ୍କ 'ବୀର ଚୂଡ଼ା' ପ୍ରଭୃତି ରଚନାବଳୀ ଉଲ୍ଲେଖ ଯୋଗ୍ୟ । ଏହାଛଡ଼ା ଏଥିରେ ନିୟମିତ ଭାବେ ସାହିତ୍ୟସମ୍ବାଦ, ସାମୟିକ ପ୍ରବନ୍ଧ, ଓ ପୁସ୍ତକ ସମାଲୋଚନା ସମ୍ବଳିତ 'ନିକଷ' ମଧ୍ୟ ପ୍ରକାଶ ପାଉଥିଲା ।

ସମସାମୟିକ ସାହିତ୍ୟ ସୃଷ୍ଟି ଓ ଚିନ୍ତାଧାରାପ୍ରବାହ ସହିତ କିପରି ବ୍ରଜସୁନ୍ଦର ଘନିଷ୍ଠ ଭାବେ ସଂଶ୍ଳିଷ୍ଟ ଥିଲେ ତାହା ଏଥିରୁ ଜଣାଯାଏ । ସଦ୍‌ଗ୍ରନ୍ଥ ଅଧ୍ୟୟନ ଥିଲା ବ୍ରଜସୁନ୍ଦରଙ୍କ ଜୀବନର ଅନ୍ୟତମ ଶ୍ରେଷ୍ଠ ବିଳାସ । ତାଙ୍କର ଅବସର ସମୟ ଇଂରାଜୀ, ଓଡ଼ିଆ ଓ ବଙ୍ଗଳାର ବିବିଧ ପୁସ୍ତକ ଅଧ୍ୟୟନରେ ଅତିବାହିତ ହେଉଥିଲା ।

ଫକୀରମୋହନଙ୍କ ମୃତ୍ୟୁପରେ ଓଡ଼ିଆ କଥା ସାହିତ୍ୟ କ୍ଷେତ୍ରରେ ଅବନତି ଲକ୍ଷ୍ୟକରି ବ୍ରଜସୁନ୍ଦର ଓଡ଼ିଆ ଉପନ୍ୟାସର ଅଭିବୃଦ୍ଧି କଳ୍ପେ ୧୯୨୩ ରେ 'ମୁକୁର ଉପନ୍ୟାସ ଗ୍ରନ୍ଥମାଳା' ପ୍ରକାଶର ପରିକଳ୍ପନା କରିଥିଲେ । ଏହି ପରିକଳ୍ପନା ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ସର୍ବପ୍ରଥମ ଓ ଅଭିନବ । ପ୍ରତିମାସରେ ଗୋଟିଏ ଲେଖା ଉପନ୍ୟାସ ପ୍ରକାଶ କରିବା ବ୍ରଜସୁନ୍ଦରଙ୍କ ଅଭିପ୍ରାୟ ଥିଲା । ଏହି ପରିକଳ୍ପନାର ପରିଣତି ସ୍ୱରୂପ କୁନ୍ତଳା କୁମାରୀଙ୍କ ଉପନ୍ୟାସ 'ପରଶମଣି' ମୁକୁର ଉପନ୍ୟାସମାଳାର ଆଦ୍ୟ ଅର୍ଘ୍ୟରୂପେ ସେ ପ୍ରକାଶ କରାଇଥିଲେ । ତା ପରେ କ୍ରମାନ୍ୱୟରେ ଚନ୍ଦ୍ରମଣି ମହାନ୍ତିଙ୍କ 'ଭୁଲ ଫକୀର', ଚନ୍ଦ୍ରମଣି ଆଚାର୍ଯ୍ୟଙ୍କ 'ସଫଳ ସ୍ୱପ୍ନ,' ଦୟାନିଧି ମିଶ୍ରଙ୍କ 'ମାନଭଞ୍ଜନ',କୁନ୍ତଳାକୁମାରୀଙ୍କ 'କାଳୀବୋହୂ',ଗୋବିନ୍ଦ ତ୍ରିପାଠୀଙ୍କ 'ପ୍ରମାଦ', ହରେକୃଷ୍ଣ ମହାନ୍ତିଙ୍କ 'ସ୍ୱରାଜ' ପ୍ରଭୃତି ଉପନ୍ୟାସ ଗୁଡ଼ିକ ତାଙ୍କ ଉଦ୍ୟମରେ ପ୍ରକାଶ ପାଇଥିଲା । ସେ ଏହି ଉପନ୍ୟାସଗୁଡ଼ିକୁ ସୁଲଭ ମୂଲ୍ୟରେ ଗ୍ରାହକମାନଙ୍କୁ ଯୋଗାଇ ଦେବାର ଉଦ୍ୟମ କରିଥିଲେ । ସେଥିପାଇଁ ଏହା 'କାଚ ମୂଲ୍ୟରେ କାଞ୍ଚନ ବିକ୍ରୟ' ନାମରେ ମୁକୁର ପୃଷ୍ଠାରେ ବିଜ୍ଞାପିତ ହୋଇଥିବା ଦେଖାଯାଏ । ଏଣୁ ଓଡ଼ିଆ ଉପନ୍ୟାସକୁ ଜନପ୍ରିୟ କରିବାକୁ ଓ ଉପନ୍ୟାସ ରଚନାରେ ଲେଖକମାନଙ୍କୁ ଆଗ୍ରହୀ କରାଇବାକୁ ବ୍ରଜସୁନ୍ଦରଙ୍କ ଏହି ଉଦ୍ୟମ ଯେ ପ୍ରଶଂସନୀୟ ଓ ଉଲ୍ଲେଖ-

ଯୋଗ୍ୟ କହିବା ଅନାବଶ୍ୟକ । କୁନ୍ତଳାକୁମାରୀଙ୍କ କବିତା ରଚନା ତଥା ଉପନ୍ୟାସ ରଚନାରେ ବ୍ରଜସୁନ୍ଦରଙ୍କ ଉତ୍ସାହ ଓ ପୋଷକତାକୁ କୃତଜ୍ଞତାର ସହିତ ସ୍ୱୀକାର କରି କବି କୁନ୍ତଳା କୁମାରୀ ତାହାଙ୍କ 'ଅଞ୍ଜଳି' କବିତା ସଂଗ୍ରହର ଶତଦଳ କବିତା ବିଭାଗକୁ ବ୍ରଜସୁନ୍ଦରଙ୍କ ନବଜାତ ସନ୍ତାନ ନାମରେ ଉତ୍ସର୍ଗ କରିଯାଇଛନ୍ତି ।

ବ୍ରଜସୁନ୍ଦରଙ୍କ ବନ୍ଧୁବତ୍ସଳତା ଓ ଅତିଥେୟତା ଥିଲା ଅନନ୍ୟ ସାଧାରଣ । ସାହିତ୍ୟିକ ବନ୍ଧୁମାନଙ୍କୁ ଅପ୍ୟାୟିତ କରିବାରେ ସେ ପରମ ଆନନ୍ଦ ଅନୁଭବ କରୁଥିଲେ । ପ୍ରତି ଶନିବାର ସନ୍ଧ୍ୟାରେ ବ୍ରଜସୁନ୍ଦରଙ୍କ ଗୃହରେ ମୁକୁର ସାହିତ୍ୟିକ ବନ୍ଧୁ ସମ୍ମିଳନୀ ବସେ । ସେଇଠି କବିତା ରଚିତ ହେବା ସଙ୍ଗେ ସଙ୍ଗେ ବନ୍ଧୁ ମହଲରେ ପଠିତ ଓ ଆଲୋଚିତ ହୁଏ । ଉତ୍କୃଷ୍ଟ ବିବେଚିତ ଲେଖାଟି ତତ୍ପରେ ପ୍ରେସ୍‌କୁ କମ୍ପୋଜ କରିବାକୁ ଦିଆଯାଇ ତାହାର ମୁଦ୍ରଣ ବ୍ୟବସ୍ଥା ହୋଇଯାଏ । ତା'ପରେ ସାହିତ୍ୟିକ ବନ୍ଧୁମାନଙ୍କୁ ବ୍ରଜସୁନ୍ଦର କାବ୍ୟରସ ବ୍ୟତୀତ ବିବିଧ ସୁରସ ଆହାର୍ଯ୍ୟଦ୍ୱାରା ପରିତୃପ୍ତ କରନ୍ତି ।

ସାହିତ୍ୟିକମାନଙ୍କୁ ସାହିତ୍ୟ ରଚନା ଲାଗି ଉତ୍ସାହ ଦାନ, ପୁସ୍ତକ ଓ ପତ୍ରିକା ପ୍ରକାଶ ବ୍ୟତୀତ ବ୍ରଜସୁନ୍ଦର ନିଜେ ମଧ୍ୟ ବହୁବିଧ ସାହିତ୍ୟ ରଚନା କରି ଯାଇଅଛନ୍ତି । କୈଶୋରାବସ୍ଥାରୁ କବିତା ରଚନା କରିବା ଲାଗି ତାଙ୍କର ଆଗ୍ରହ ପରିଲକ୍ଷିତ ହୋଇ ଥିଲା । ସମ୍ଭବତଃ ଶୈଶବରୁ ପିତୃମାତୃହୀନ ହେବା ଯୋଗୁ ସେ ଅତ୍ୟନ୍ତ ଆତ୍ମ ସଚେତନ ହୋଇ ପଡ଼ିଥିଲେ । ତାଙ୍କର ପ୍ରଥମ ରଚନା ହେଉଛି ଦୁଇଟି ଜଣାଣ । ବ୍ରଜସୁନ୍ଦରଙ୍କ ପୈତୃକ ଗ୍ରାମ ସମୁଦପୁରର ଦୁଇ ପ୍ରାନ୍ତରେ କଲ୍ୟାଣେଶ୍ୱର ଓ ବଟେଶ୍ୱର ନାମକ ଦୁଇଟି ମହାଦେବ ପ୍ରତିଷ୍ଠିତ । ଏହାଙ୍କ ଉଦ୍ଦେଶ୍ୟରେ ବ୍ରଜସୁନ୍ଦର ଅନୁପ୍ରାସଯୁକ୍ତ, ଅକ୍ଷର ନିୟମରେ ଯେଉଁ ଦୁଇଟି ଜଣାଣ ଲେଖିଥିଲେ । ତନ୍ମଧ୍ୟରୁ ଗୋଟିଏ କବିତାର ଆଦ୍ୟ ଚରଣଟି ଏହିପରି "କଲ୍ୟାଣକର କଲ୍ୟାଣେଶ୍ୱର କାଳିମା ଲିଭାଇ ।" ପରବର୍ତ୍ତୀ କାଳରେ ମଧ୍ୟ ବ୍ରଜସୁନ୍ଦର ବହୁସଂଖ୍ୟକ ଭକ୍ତି ଗୀତିକା ରଚନା କରିଥିଲେ । ମାତ୍ର ଆପଣାର ରଚନାବଳୀକୁ ପ୍ରଚାରିତ ବା ମୁଦ୍ରିତ କରିବା ବିଷୟରେ ସେ ଆଦୌ ମନଯୋଗୀ ନଥିଲେ । ବୈଷ୍ଣବୋଚିତ ଅନାସକ୍ତି ଥିଲା ତାଙ୍କର ଚରିତ୍ରିକ ବୈଶିଷ୍ଟ୍ୟ । ଏଣୁ ବହୁ ସାହିତ୍ୟିକଙ୍କର ବହୁ ପୁସ୍ତକର ମୁଦ୍ରଣ

ଓ ପ୍ରଚାର ଲାଗି ସେ ପ୍ରଯତ୍ନ କରିଥିଲେହେଁ ଏବଂ ନିଜର ରଚନାବଳୀକୁ ମୁଦ୍ରିତ କରିବାର ସମସ୍ତ ସମ୍ବଳ, ସୁବିଧା ତାଙ୍କର ଅନାୟାସଲଭ୍ୟ ଥିଲେହେଁ, ସେ ଆପଣାର ରଚନାବଳୀକୁ ପୁସ୍ତକାକାରରେ ମୁଦ୍ରିତ କରିବାର କଳ୍ପନା ମଧ୍ୟ କରିନାହାନ୍ତି ।

'ମୁକୁର' ପତ୍ରିକାରେ ମଧ୍ୟ ବ୍ରଜସୁନ୍ଦରଙ୍କ ବହୁ ଗଦ୍ୟ ଓ ପଦ୍ୟ ରଚନା ପ୍ରକାଶିତ ହୋଇଅଛି । ମାତ୍ର ସେଗୁଡ଼ିକ ବିଭିନ୍ନ ଛଦ୍ମନାମାଙ୍କିତ ହୋଇ ପ୍ରକାଶିତ । ତାଙ୍କର କେଉଁ କେଉଁ ରଚନା ମଧ୍ୟ 'ଶ୍ରୀ—'ଭାବେ ଚିହ୍ନିତ । ବହୁ ଲେଖକଙ୍କର ରଚନା 'ଶ୍ରୀ' ଚିହ୍ନିତ ହୋଇଥିବାରୁ, ବହୁସଂଖ୍ୟକ ନାମହୀନ ପ୍ରକାଶିତ ରଚନାମାନଙ୍କ ମଧ୍ୟରୁ କେଉଁଗୁଡ଼ିକ ବ୍ରଜସୁନ୍ଦରଙ୍କ ଦ୍ୱାରା ରଚିତ, ତାହା ନିର୍ଣ୍ଣୟ କରିବା ଅତୀବ କଷ୍ଟକର । ଯେଉଁଗୁଡ଼ିକ ନିଶ୍ଚିତଭାବେ ବ୍ରଜସୁନ୍ଦରଙ୍କ ରଚନାଭାବେ ନିର୍ଦ୍ଧାରିତ କରାଯାଇ ପାରିଛି, ସେମାନଙ୍କ ମଧ୍ୟରୁ କେତେଗୋଟି ମାତ୍ର ଏହି ପୁସ୍ତକର 'ପରିଶିଷ୍ଟ' ବିଭାଗରେ ପ୍ରଦତ୍ତ ହୋଇଅଛି । ମୁକୁର ପ୍ରଥମ ଭାଗ ୧ମ ସଂଖ୍ୟାରେ 'ପାଗଳର ପ୍ରଳାପ' ଶୀର୍ଷକ ରମ୍ୟ ରଚନାଟି ବ୍ରଜସୁନ୍ଦରଙ୍କ ରଚନା ।

ଜାତୀୟ ଭାବରେ ଉଦ୍‌ବୁଦ୍ଧ ହୋଇ ବ୍ରଜସୁନ୍ଦର ଅନେକ ସଙ୍ଗୀତ ରଚନା କରିଥିଲେ । ତନ୍ମଧ୍ୟରୁ 'ମାଆ ମାଆ ବୋଲି ଡାକୁଛକି ମୋତେ ଆରେ ମୋ ଦୁଃଖ ପାଶୋରି' ସଙ୍ଗୀତଟି ଏକଦା ଜନପ୍ରିୟତା ଅର୍ଜନ କରିଥିଲା ଓ ଉତ୍କଳ ସମ୍ମିଳନୀର ସଙ୍ଗୀତ ଭାବେ ସମ୍ମିଳନୀ ମଣ୍ଡପକୁ ମୁଖରିତ କରୁଥିଲା । ମଧୁସୂଦନଙ୍କ ଏକ କବିତାର ଏହା ପ୍ରତ୍ୟୁତ୍ତର । ପ୍ରକାଶ ଥାଉକି, ବ୍ରଜସୁନ୍ଦର ପ୍ରଥମେ ମଧୁସୂଦନଙ୍କ ଜାତୀୟତାମୂଳକ ସୁପ୍ରସିଦ୍ଧ ୭ଟି କବିତା, ଯାହାକି ପୂର୍ବରୁ ମୁକୁରରେ ପ୍ରକାଶିତ ହୋଇଥିଲା, ସେଗୁଡ଼ିକୁ 'ଜାତୀୟ ଗୀତ' ନାମରେ ୧୯୧୬ ମସିହାରେ ମୁଦ୍ରିତ ଓ ପ୍ରକାଶିତ କରିଥିଲେ ।

ବ୍ରଜସୁନ୍ଦର ଶିଶୁ ଓ କିଶୋର ଉପଯୋଗୀ ଅନେକ ନୀତିଶିକ୍ଷା-ମୂଳକ, ଉପଦେଶାତ୍ମକ ପଦ୍ୟ ରଚନା କରି ଯାଇଅଛନ୍ତି । 'ଅକ୍ଷର ପରିଚୟ' ପୁସ୍ତକର କ୍ଷୁଦ୍ର କବିତାବଳୀମାନଙ୍କରୁ ତାହାର ମହତ୍ତ୍ୱ ଉତ୍ତମରୂପେ ଜଣା ପଡ଼ିଥାଏ ।

"ପ୍ରଟେଲ୍‌ଭଳା ନୁହେଁ ପ୍ରକୃତି ଲକ୍ଷଣ
ବଳାସ ନୁହଇ ବରଷାର ଚିହ୍ନ ।
କାର୍ଯ୍ୟହୀନ ବୃଥା ବାହ୍ୟ ଆସ୍ଫାଳନ
ନୁହଇଁ ଉପଯିତ ଲଭର କାରଣ ।
×　　×　　×
ସଦୁଦ୍ଦେଶ୍ୟ କେବେ ନୁହେଁ ବିଫଳ
ଅବଶ୍ୟ କାଳେ ତା ଫଳଇ ଫଳ ।
×　　×　　×
କ୍ଲବ୍‌ଙ୍କଟି ଯୋଡ଼ିଲେ ନ ଭଜନ ତପନ
ଜ୍ଞାନେ ତ ଙ୍କେ ଯଥା ମାୟା ଆବରଣ ।
ଫୁଲ ଲେଉ୍ଡା ନୁହେଁ ନଥିଲେ ସୌରଭ
ପୁଙ୍ଗେ ଜେ ମାନବେ ନଥିଲେ ଗୌରବ ।"

ଓଡ଼ିଆ ଭାଷାଭାଷୀ ବଚ୍ଛିନ୍ନାଞ୍ଚଳଗୁଡ଼ିକର ଏକତୀକରଣ ଲଗି ବ୍ରଜସୁନ୍ଦର ବଚ୍ଛିନ୍ନାଞ୍ଚଳମାନଙ୍କର ଐତିହାସିକ ଉପାଦାନ ସଂଗ୍ରହାର୍ଥେ ମନୋଯୋଗୀ ହୋଇଥିଲେ । ବହୁ ଦୁର୍ଲଭ ପୁସ୍ତକ, ସରକାରୀ ବବରଣୀ ଓ କାଗଜପତ୍ର ସେ ସେଇସବୁ ବଚ୍ଛିନ୍ନାଞ୍ଚଳ ଯେ ବହୁ ପ୍ରାଚୀନ କାଳରୁ ଓଡ଼ିଶାର ଅବଚ୍ଛେଦ୍ୟ ଅଙ୍ଗଭାବେ ରହିଆସିଛି, ଏହା ପ୍ରତିପାଦନ କରିଥିଲେ । କେତେକ ବଶିଷ୍ଟ ଐତିହାସିକଙ୍କ ସହଯୋଗିତାରେ ବ୍ରଜସୁନ୍ଦରଙ୍କ ଏହି ଗବେଷଣା ଏକ ଉଲ୍ଲେଖଯୋଗ୍ୟ ବିଷୟ । ଏହାର ସୁଫଳ ସ୍ୱରୂପ ବ୍ରଜସୁନ୍ଦର ବହୁ ମୂଲ୍ୟବାନ ଇଂରାଜୀ ପୁସ୍ତକ ସଙ୍କଳନ ଓ ତାହାର ପୁନର୍ମୁଦ୍ରଣ କରି ଯାଇଛନ୍ତି । ସେଥିମଧ୍ୟରୁ (୧) ସି. ଆର୍. ଉଇଲ୍‌ସନଙ୍କ How the English came to Orissa in 1633 From early annal of the English in Bengal) (୨) Fxtract from the fifth report from the select committee of the House of Commons on the affairs of the East India Company in 1812 (୩) Orissa in Hamiltn's Hindustan (published in 1820) (୪) Extracts from Adam's Report on Vernacular education in Bengal and Bihar1835-38 (୫) ଷ୍ଟାର୍ଲିଙ୍ଗ ଓ ଜି. ଟି. ଉଇଲ୍‌ସଙ୍କ Extracts from Among the Uriyas

(୭) ଗ୍ରିଅରସନଙ୍କ Linguistic Survey of Indiaରୁ ଙ୍କାସ୍ପୃଷ୍ଟ ମୁଦ୍ରିତ ପୁସ୍ତକମାନ ଉଲ୍ଲେଖଯୋଗ୍ୟ । ଉତ୍କଳ ସାହିତ୍ୟର ସମ୍ପାଦକ ଥିବା ସମୟରେ ବ୍ରଜସୁନ୍ଦର ଏହିଗଣାର ଦାବୀ ପ୍ରତିପାଦନାର୍ଥେ ଏହି ସବୁ ପୁସ୍ତକ ନିଜ ବ୍ୟୟରେ ମୁଦ୍ରଣ କରି ଆପଣା ମହତ୍ତ୍ୱର ପରିଚୟ ଦେଇ ଯାଇଅଛନ୍ତି ।

ପରିଶେଷରେ ଏତିକି ବକ୍ତବ୍ୟ ଯେ, ପୁସ୍ତକ ପ୍ରକାଶ, ପତ୍ରିକା ସମ୍ପାଦନା, ଲେଖକମାନଙ୍କୁ ଉତ୍ସାହ ଦାନ କରିବା ସଙ୍ଗେ ସଙ୍ଗେ ଆପଣାର ବହୁନୈତିକ କର୍ମବହୁଳ ଜୀବନ କାଳ ମଧ୍ୟରେ ରଚିତ ସ୍ୱଳ୍ପ ରଚନାବଳୀ ଦ୍ୱାରା ବ୍ରଜସୁନ୍ଦର ଓଡ଼ିଆ ସାହିତ୍ୟର ଯେଉଁ ଉପକାର ସାଧନ କରି ଯାଇଛନ୍ତି, ତାହା ଅବଶ୍ୟ ଆମ୍ଭମାନଙ୍କର ଚିରସ୍ମରଣୀୟ ହୋଇ ରହିବ ।



# ବ୍ରଜସୁନ୍ଦରଙ୍କ ଜୀବନର ସ୍ମରଣୀୟ ଘଟଣାବଳୀ

ଶ୍ରୀ ଜାନକୀ ବଲ୍ଲଭ ମହାନ୍ତି

୧୮୮୦—ଜୁଲାଇ ୬ ତାରିଖରେ ଜନ୍ମ

୧୮୮୬—ପିତା ଶ୍ୟାମ ସୁନ୍ଦରଙ୍କ ବିୟୋଗ

୧୮୮୭—ମାତା ସ୍ୱର୍ଣ୍ଣପ୍ରଭାଙ୍କ ବିୟୋଗ

୧୯୦୦—'କେନ୍ଦ୍ରାପଡ଼ା ତରୁଣ ଉତ୍କଳ ସଭା' ସ୍ଥାପନ ଓ ରେଭେନ୍ସା କଲେଜରୁ ଏଫ୍. ଏ. ପାସ ।

୧୯୦୨—କଲିକତା ପ୍ରେସିଡେନ୍ସି କଲେଜରୁ ବି. ଏ. ପାସ୍ ।

୧୯୦୩—'ଉତ୍କଳ ୟୁନିଅନ କନଫରେନ୍ସ'ର ( ଉତ୍କଳ ସମ୍ମିଳନୀ ) କାର୍ଯ୍ୟକାରୀ କମିଟୀ ସଭ୍ୟ ।

୧୯୦୪—'ମୁକୁର'ର ସମ୍ପାଦନା

୧୯୦୬-୧୮—କଟକ ପ୍ରିଣ୍ଟିଂ କମ୍ପାନୀର ଡିରେକ୍ଟର

୧୯୦୭—ଇନ୍ଦୁମୁଖୀ ଦେବୀଙ୍କ ସହ ବିବାହ

୧୯୦୯—ପ୍ରଥମା କନ୍ୟା ଶାନ୍ତି ଦେବୀଙ୍କ ଜନ୍ମ ଓ ପତ୍ନୀ ବିୟୋଗ ।

୧୯୧୦—ମୁକୁର ପ୍ରେସ ପ୍ରତିଷ୍ଠା ।

୧୯୧୭—ଉମାସୁନ୍ଦରୀ ଦେବୀଙ୍କ ସହ ବିବାହ ।

୧୯୨୭-୨୫—ପାଟନା ବିଶ୍ୱବିଦ୍ୟାଳୟର ଫେଲୋ ଓ ସିଣ୍ଡିକେଟ ସଭ୍ୟ ।

୧୯୧୬—୨୦—ବିହାର ଓଡ଼ିଶା କାଉନ୍‌ସିଲ ସଭ୍ୟ, ମଣ୍ଟେଗ୍ୟୁ ସାହେବଙ୍କୁ ସ୍ମାରକପତ୍ର (ମେମୋରାଣ୍ଡମ୍) ପ୍ରଦାନ

୧୯୧୮—ଉତ୍କଳ ସମ୍ମିଳନୀର ସମ୍ପାଦକ, 'ଦି ଓଡ଼ିଆ' ନାମକ ଇଂରାଜୀ ସାପ୍ତାହିକ ପତ୍ରିକାର ସମ୍ପାଦନା (୧୯୧୮-୧୯୨୨)

୧୯୨୧—୨୪—କେନ୍ଦ୍ର ଆସେମ୍ବ୍ଲିର ସଭ୍ୟ

୧୯୨୪—ଫିଲିପ୍ ଡଫ କମିଟୀଙ୍କ ନିକଟରେ ଓଡ଼ିଶାର ଦାବୀ ଉପସ୍ଥାପନ

୧୯୨୪—ଓଡ଼ିଶା ପିପୁଲ୍‌ସ୍ ଆସୋସିଏସନର ସଭାପତି

୧୯୨୭—ଜ୍ୟେଷ୍ଠ ପୁତ୍ର ସତ୍ୟସୁନ୍ଦରଙ୍କ ଜନ୍ମ

୧୯୨୯—ପାଟନାରେ ସାଇମନ୍ କମିଶନଙ୍କ ନିକଟରେ ସାକ୍ଷାତ ଲାଗି ଓଡ଼ିଶାର ପ୍ରତିନିଧି ମଣ୍ଡଳୀର(ଡେପୁଟେସନ) ନେତୃତ୍ୱ

୧୯୩୦—'ସତ୍ୟ ସମାଚାର' ସମ୍ପାଦନା । ସହ ସମ୍ପାଦକ—ଗୋପାଳଚନ୍ଦ୍ର ପ୍ରହରାଜ ।

୧୯୩୧—ଉତ୍କଳ ଛାତ୍ର ସମାଜର ବାର୍ଷିକ ଅଧିବେଶନର ସଭାପତିତ୍ୱ, ଯାଜପୁର ଲୋକାଲ୍‌ବୋର୍ଡ଼, କଟକ ମ୍ୟୁନିସିପାଲିଟି ଓ କଟକ ଜିଲ୍ଲାବୋର୍ଡର ସଭ୍ୟ

କଟକ ଇଞ୍ଜିନିୟରିଂ ଓ ମେଡିକାଲ ସ୍କୁଲ ମ୍ୟାନେଜିଂ କମିଟୀ କମିଟୀ ସଭ୍ୟ, ଓଡ଼ିଶା ଆଥ୍‌ଲେଟିକ୍ ଆସୋସିଏସନ ପ୍ରତିଷ୍ଠା ଓ ଉକ୍ତ ଅନୁଷ୍ଠାନର ସମ୍ପାଦକ ତଥା କାର୍ଯ୍ୟକାରୀ କମିଟୀ ସଭ୍ୟ

୧୯୩୨—ଓଡ଼୍‌ନେଲ୍ କମିଟୀ ବା ଓଡ଼ିଶା ସୀମାନିର୍ଦ୍ଧାରଣ କମିଟୀକୁ ସ୍ମାରକ ପତ୍ର ପ୍ରଦାନ

୧୯୩୨—କନିଷ୍ଠ ପୁତ୍ର ଶିବସୁନ୍ଦରଙ୍କ ଜନ୍ମ ।

୧୯୩୬—ଫ୍ରାନ୍‌ସ୍ରାଇକ୍ କମିଟିକୁ ମେମୋରାଣ୍ଡମ ପ୍ରଦାନ ।

୧୯୩୭—୪୪—ଓଡ଼ିଶା ବିଧାନସଭାର ସଭ୍ୟ ।

୧୯୩୮—ରେଭେନ୍‌ସା କଲେଜିଏଟ୍, ରେଭେନ୍‌ସା ଗାର୍ଲସ୍‌ସ୍କୁଲ, ଓ କଟକ ଟ୍ରେନିଂସ୍କୁଲର କାର୍ଯ୍ୟକାରୀ କମିଟୀ ସଭ୍ୟ

ଓଡ଼ିଶା ଜମିଦାର ସମିତିର ଉପସଭାପତି, ଉତ୍କଳ ସଙ୍ଗୀତ-ସମାଜର ସଭାପତି, କଟକ ବ୍ୟାଙ୍କର ଡିରେକ୍ଟର, ସାକ୍ଷୀଗୋପାଳ ଦେବୋତ୍ତରର କମିଟିର ସଭ୍ୟ ।

୧୯୪୧ – ଜମିଦାରୀକୁ କୋର୍ଟ ଅଫ୍ ୱାର୍ଡସ୍ କରାଇବା ଲାଗି ସରକାରଙ୍କୁ ଆବେଦନ ।

୧୯୪୨—ସଂଗୀତ ପ୍ରଚାର ବିଭାଗର କର୍ମକର୍ତ୍ତା (ସଙ୍ଗ୍ ପବ୍ଲିସିଟି ଅଫିସର) ଭାବେ ନିଯୁକ୍ତ ।

୧୯୪୪—ଜୁନ୍ ୯ ତାରିଖରେ—ସ୍ୱର୍ଗାରୋହଣ ।

—୧୦୮—

# ବ୍ରଜସୁନ୍ଦରଙ୍କ ରଚନାବଳୀ

ବ୍ରଜସୁନ୍ଦର ବହୁ ସଙ୍ଗୀତ, ପ୍ରବନ୍ଧ ଲେଖିଥିଲେହେଁ ନିଜ ଜୀବଦ୍ଦଶାରେ ତାହାକୁ ପୁସ୍ତକାକାରରେ ଛପାଇବାକୁ ଅଭିଳାଷୀ ହୋଇ ନାହାଁନ୍ତି । ଏପରିକି 'ମୁକୁର' ପତ୍ରିକାରେ ପ୍ରକାଶିତ ତାହାଙ୍କର ବହୁ କବିତାରେ ନିଜର ନାମଟି ମଧ୍ୟ ମୁଦ୍ରିତ କରାଇ ନାହାନ୍ତି । ତାହାଙ୍କ ଗଦ୍ୟ ଓ ପଦ୍ୟ ରଚନା ମଧ୍ୟରୁ କେତେଗୋଟି ମାତ୍ର ନମୁନା ସ୍ୱରୂପ ଏଠାରେ ପ୍ରଦତ୍ତ ହେଲା । ପ୍ରାଚୀନ ପତ୍ର ପତ୍ରିକା ଓ ପୁସ୍ତିକାବଳୀରୁ ଏଗୁଡ଼ିକ ସଂଗୃହୀତ । କେତେଗୋଟି କବିତାର ଶିରୋନାମା ନଥିବାରୁ ତାହା ନାମାଙ୍କିତ ହୋଇଅଛି ।

ସଂପାଦକ

## ମାତାର ଖେଦ ✽

ମାଆ ମାଆ ବୋଲି ଡାକୁଛୁ କି ମୋତେ
ଆରେ ମୋ ଦୁଃଖ ପାସୋର
କାହିଁ ପାଇଁ ଚେଇଁ ଶୋଇଥିଲି ବାପ
ମୋ ମନ-ନୟନ ତାର ।

ଦିଏ ମୋର କ୍ଷୀର ରୂପେ ମୋ ରୁଧିର
ବିଦାରି ହୃଦୟ ଯୋଗାଏଁ ଆହାର
ମୋ ସୁଖ ସମ୍ପଦ କରିଅଛୁ ଦୂର
ଭୁଲି ଯାଇଅଛୁ ପର । ୧ ।

ମୁଣ୍ଡ ଗଣ୍ଡି ମୋର ହୋଇ ଖଣ୍ଡ ଖଣ୍ଡ
ମୋ ସୁନା ସଂସାର ହେଲା ଲଣ୍ଡ ଭଣ୍ଡ
ଦେଖୁଥିବ କରେ ମା'ର ଏହି ଦଣ୍ଡ
ମୋ ଦିନ-ସରି ପସର । ୨ ।

ହାତ ଯୋଡ଼ି ଧରି କହୁଛି ରେ ଧନ
ମୋ ଦୁଃଖ ନାଶନେ ବଳା ଏବେ ମନ
ଛାଡ଼ ହିଂସା, ଦ୍ୱେଷ, ମାନ, ଅଭିମାନ
ମାତା-ଦୁଃଖ-ଶୋକହର । ୩ ।

ମୋ ବାପ ପଣରେ ଜଗତର ପିତା
ଦୁଃଖିନୀ ବୋଲି କି ହେବ ତାଙ୍କୁ ଚିନ୍ତା
ପୁରିବଲେ ମୁଁ ତ ହେବ ଜଗନ୍ମିତା
ପୁଏ ପଣ କଲେ ପର । ୪ ।

---

✽ ଉତ୍କଳ ସମ୍ମିଳନୀରେ ଏହି ସଂଗୀତଟି ଗୀତ ହେଉଥିଲା ଓ ଏହା ମଧୁସୂଦନଙ୍କ 'ମାଆ ମାଆ ବୋଲି କେତେ ମୁଁ ଡାକିଲି' ସଂଗୀତର ଅନୁକରଣ ।

## କି ଥିଲା କି ହେଲା

ଗୃହଂରେ ଘଇ ଧାନ ହାନ ଉତ୍କଳେ ।
କି ଥିଲା କି ହେଲା ଆସି କାଳ କବଳେ । ଘୋଷା ।

ଯାର ଯଶରଶ୍ମି ସୌରଭ ବିକାଶି
ଜନ ମନ ହରୁଥିଲା ଭରତ ମଣ୍ଡଳେ ।
ଯା' ସ୍ମୃତି ପୁରାଣ କାବ୍ୟ ଉପାଖ୍ୟାନ
ଅମୂଲ୍ୟ ରତନମାଳ ବୀଣାପାଣି ଗଳେ ।୧।
ଯା-ଶିଳ୍ପ-ଗୃହଶ୍ରୀ ପ୍ରକୃତ ମାଧୁରୀ
ବିସ୍ମୟ ଶାନ୍ତ ଜନ୍ମାଏ ଆଜ ଏ ଭୂତଳେ
ଯାର ଶୂର ଦଳ ଗଙ୍ଗାରୁ ଗୋଦାବରୀ—
ଯାଏ ବଶ କରିଥିଲେ ନିଜ ଭୁଜବଳେ ।୨।
(ଆଜ) ଉତ୍କଳ ସନ୍ତାନ ପଶୁଠାରୁ ହୀନ
ହୋଇ କାନ୍ଦୁଛନ୍ତି ଦିନ ଆତ୍ମ କର୍ମଫଳେ ।
ହେବେ କି ସଦୟ ପ୍ରଭୁ ଦୟାମୟ
ଫୁଟିବ ମୁଖ-କମଳ ଉତ୍କଳ ଅଚଳେ ।୩।



## ସ୍ମରନ୍ତୁ ପୂର୍ବ ଗୌରବ

ବଜାଅ ଏକତାନେ ଏକପ୍ରାଣେ ଏକତା-ବୀଣା ।
ମୃତସଞ୍ଜୀବନୀ ସମ ଏ ଧ୍ୱନି ବିନା । (ଘୋଷା)

ଜାଗିବ ସର୍ବେ ଉତ୍କଳ ନର, ନାରୀ, ବୃଦ୍ଧ, ବାଳ
ଏ ସ୍ୱରେ କାହାର ମନ ନ ହୁଏ କିଣା ?
ସ୍ମରନ୍ତୁ ପୂର୍ବ ଗୌରବ ଭାବନ୍ତୁ ପୂର୍ବ ବିଭବ
ବର୍ତ୍ତମାନ ଦେଖି ଗତ ଯାଏ କି ଚିହ୍ନା ?
ତେଜନ୍ତୁ ବିଳାସ ବାସ କାଟନ୍ତୁ ଜଡ଼ତା ପାଶ
ଆଳସ୍ୟ ନିଷେଧ କି ଚରିତ୍ରଦନର ମିଛା ?

କାଗିଲ୍ଲି ସବୁ ଘଂଟେ          ଉତ୍କଳ ମୃତବନ୍ଧ
ଏକତା ସ୍ୱନ ଶ୍ରବଣେ ଉଠଇ କ ନା ?
ନଦେଇ ଦୋଷ ଈଶ୍ୱରେ          ପଣ ହେ କର୍ମକ୍ଷେତ୍ରରେ
ଧର୍ମ ସହାୟ ନୁହନ୍ତି, କରମ ବିନା ।

*

## ରହିବ ତୁମ୍ଭଙ୍କୁ ଚାହିଁ

ରହିବ ତୁମ୍ଭଙ୍କୁ ଚାହିଁ ହେ ନାଥ
ରହିବ ତୁମ୍ଭଙ୍କୁ ଚାହିଁ
କେବେ ହେଲେ ବାରେ ଯୁଗ ଯୁଗାନ୍ତରେ
ତୁମ୍ଭ ଭେଟ ହେବା ପାଇଁ ।
ସୁମେରୁ ଅଚଳ ବୁଡ଼ିବ ଅତଳେ
ସାଗର ହେବ ସାହାର
ସାହାରରେ ଫୁଟିବ କମଳ
ଭ୍ରମର ଭ୍ରମିବେ ଧାଇଁ ହେ ।
ଦିବାକର ହେବ ସୁଧାଂଶୁ ଶୀତଳ
ତାର ବଞ୍ଚିଦେବେ ଖର
ଧରା ସାରା ହେବ ନନ୍ଦନ କାନନ
କଣ୍ଟକ ନଥିବ କାହିଁ ହେ ।
କାଳ ଆବର୍ତ୍ତନେ କଳି ଯିବ ଚଳି
ରହିବ ସତ୍ୟ ଶାସନ
ଦୁଃଖ, ଶୋକ, ଦୈନ୍ୟ ବିଷାଦ କାଳିମା
ଲେଶହିଁ ରହିବ ନାହିଁ ହେ
ରହିବ ତୁମ୍ଭଙ୍କୁ ଚାହିଁ ।
ଗୁରୁ ଲଘୁ ସୂକ୍ଷ୍ମ ବାୟୁର ମଣ୍ଡଳେ
ଅବା ପଞ୍ଚଭୂତ ମେଳେ
ଆତ୍ମାଟି ମୋହର ସହିଁ ବୁଲୁଥାଇ
ଥିବ ତୁମ୍ଭଙ୍କୁ ଚାହିଁ ହେ ।

(ସତ୍ୟବାର ୨୪ଶ ଭାଗ ୧୦, ୧୧, ୧୨ ସଂଖ୍ୟା)

## ଦେବତା ମୋହର ମନେ

ଥରେ ଅନା ଭଲ କରି ଅନା
କାଳଚକ୍ର ସଙ୍ଗେ ରହି ନୀଳଚକ୍ର ଉଡ଼ାଏ ଜୟ ବାନା
ସେ ତ ଗରବ କରଇ ଚୂନା
ବିଶ୍ୱ ଦିଏ କରେ ଶାନ୍ତି ପ୍ରୀତି ମୈତ୍ରୀ
ସତ୍ୟ ସାମ୍ୟ ଏହି ଧ୍ୱଜା
ସମାନ ଆସନେ ବସନ୍ତି ଏଥିରେ
ଦୁଃଖୀ ଧନୀ ରଜା ପ୍ରଜା ।
ଭଲକରି ମନକୁ ସମଝା
ଯେ କହୁ କହୁରେ ତୋର ସେ ଦେବତା
ଗଢ଼ା ତ କାଷ୍ଠ ପାଷାଣେ
ସେଠାରେ ବିରଳ ଦେବତାର ଛବି
ଦେବତା ମୋହର ମନେ
ତାଙ୍କୁ ନିଏ ଚହ୍ନିବାର ଚନ୍ଦ୍ରେ
ଶାସ୍ତ୍ର କହେ ପରି ମନର ମୂଳରେ
ରାଜେ ଏ ବିଶ୍ୱ ଜଗତ
ଦାସ କହେ ମୁଁ ତ ଗଢ଼ିବ ଦେବତା
ସେ ମୋ ତାତ ମୁଁ ତା ତାତ
ଏହା ନିନା ସନାତନ ସତ୍ୟ ।

❋

## ତୁମ୍ଭେ ପରା ଅଟ କରୁଣାର ସିନ୍ଧୁ

ନୂଆ ବରଷରେ ପୁରୁଣା ଭିକାରୀ
ଠିଆ ଆଜି ତୁମ୍ଭ ଦୁଆରେ—
ଧକ୍କା ଖାଇ ଖାଇ ଥକ୍କା ହୋଇଲଣି
କନ୍ଦିବ କ ବାରେ ଆହାରେ—

ନିତ ମାଗି ତାକୁ ମିଳେନାହିଁ ଭିକ
କାନ୍ଦି ଶୁଣି ତାର ନ ଜାଗେ ବିବେକ
ଶୁଣି ନାହିଁ ନାହିଁ ମାଡ଼ ଖାଇ ଖାଇ .
ଓର ନାହିଁ ତାର ପାହାରେ ।୧।
ତୁମ୍ଭେ ପରା ଅଟ କରୁଣାର ସିନ୍ଧୁ
ଊଣା ହୋଇବ କି ଦେଲେ ଏକ ବିନ୍ଦୁ
ନିବାଣ କରୁଛ ପୁଣି ବା କରିବ
କହିବ ସେ ଆଉ କାହାରେ ।୨।
ବାରେ ହେଲେ ଜାଗୁ ମୋ ହୃଦେ ଦୟା
ଫୁଟି ଉଠୁ ଥରେ ତୁମ୍ଭ ପ୍ରାଣେ ମାୟା
ନିତି ପରି ତାକୁ ତଡ଼ନାହିଁ ଅତି
କର ନାହିଁ ଲୁଆ ଦୁଆରେ ।୩।

---

ପ୍ରବନ୍ଧ:—

# ମାଧବୀ ଦାସୀ

ଆଧୁନିକ ଉତ୍କଳରେ ସ୍ତ୍ରୀ ଶିକ୍ଷାର ଯେପରି ଅଭାବ ପରିଲକ୍ଷିତ ହୁଏ ତହିଁରୁ ଦୁଇଶତ ବା ସାର୍ଦ୍ଧ ଦୁଇଶତ ବର୍ଷ ପୂର୍ବେ ଯେ ଉତ୍କଳରେ କେବେ ସ୍ତ୍ରୀମାନେ ଶିକ୍ଷାଲାଭ କରୁଥିଲେ ତାହା ( ଯୁକ୍ତି ତର୍କ ତ ଦୂରର କଥା ) କଳ୍ପନା ଚକ୍ଷୁରେ ମଧ୍ୟ ଅତି କଷ୍ଟରେ ପ୍ରତିଭାତ ହୁଏ । "ଆଣି କାଗଜକୁ ନବବାଳୀ, ଅନୁରାଗୁଁ ନ ଲେଖିଲା କାଳି" ଏହି ପଂକ୍ତିଦ୍ୱୟ ପଢ଼ିବାବେଳେ ମନେହୁଏ ଏହା କବି କଳ୍ପନା ମାତ୍ର । "ଉତ୍କଳଦେଶ—ତହିଁରେ ପୁଣି ସ୍ତ୍ରୀ ଲେଖିକା,—ଲେଖନର ଉପକରଣ—କାଗଜ ଓ କାଳି । କବିବର ଉପେନ୍ଦ୍ର ଭଞ୍ଜ ଉକ୍ତ ପଂକ୍ତିଦ୍ୱୟ ଯେତେବେଳେ ଲେଖିଥିଲେ, ସେତେବେଳେ କଲିକତାରେ 'ବାଲି ପେପର ମିଲ୍' ହୋଇ ନଥିଲା, ଇଂରେଜ ରାଜ ଏ ଦେଶରେ ପଦାର୍ପଣ କରି ନଥିଲେ କିମ୍ବା ସ୍ତ୍ରୀ ଶିକ୍ଷାର ଉଚ୍ଚତମ ଆଦର୍ଶ ଆମ୍ଭମାନଙ୍କ ସମ୍ମୁଖରେ ଉପସ୍ଥାପିତ କରି ନଥିଲେ । କାଗଜ କାଳି ଆସିଲା କାହୁଁ ? ବା ସ୍ତ୍ରୀମାନେ ଲେଖାପଢ଼ା ଶିଖିଲେ କିପରି ?" ଏପରି

ତର୍କ ମଧ୍ୟ ଅନେକଙ୍କ ମନରେ ଉପସ୍ଥିତ ହୁଏ । ଯାହାହେଉ ଆମ୍ଭେମାନେ ଯେପରି ଭୁବନେଶ୍ୱର କୋଣାର୍କ ପ୍ରଭୃତି ଦେଖି ଆମ୍ଭମାନଙ୍କର ପୂର୍ବ-ପୁରୁଷମାନଙ୍କର କାର୍ଯ୍ୟକୁଶଳତାରେ ସ୍ଫୀତ ହେଉଁ ସେହିପରି ଉକ୍ତ ପଂକ୍ତି ଦ୍ୱୟ ଆମ୍ଭମାନଙ୍କ ମନରେ "ଅମ୍ଭ ଦେଶରେ ସ୍ତ୍ରୀ ଶିକ୍ଷା ଥିଲା" ଏହି ଅହଂକାର ଟିକକ ଆଣିଦିଏ । 'ଆମ୍ଭମାନଙ୍କର ସବୁ ଥିଲା'—'ଆମ୍ଭେ ବଡ଼ ଜାତି'—ଏହି ଅହଙ୍କାରରେ ସ୍ଫୀତ ହୋଇ ନିଷ୍କ୍ରିୟଭାବରେ ବସି ରହୁଁ, କାଳ ଅପେକ୍ଷା କରେନାହିଁ, ଦ୍ରୁତଗତିରେ ଚାଲିଥାଏ—ଦୂରରେ ଅଟ୍ଟହାସ୍ୟପୂର୍ବକ ଅଙ୍ଗୁଳି ନିର୍ଦ୍ଦେଶ କରି କହେ, "ତୁମି ଯେ ତମିରେ ତୁମି ସେ ତମିରେ ।"

ଆମ୍ଭେମାନେ ଗର୍ବ କରୁଁ ସତ୍ୟ—କିନ୍ତୁ ତାହା ସବୁ ସମୟରେ ଅମୂଳକ ନୁହେଁ । ଯଦି ସେହି ଜାତୀୟ ଅହଙ୍କାର ଦ୍ୱାରା ପ୍ରଣୋଦିତ ହୋଇ, ନବୋତ୍ସାହରେ ଉତ୍ସାହିତ ହୋଇ, କର୍ମକ୍ଷେତ୍ରରେ ଅବତୀର୍ଣ୍ଣ ହୁଅନ୍ତୁ—କାଳର ଗତି ସହିତ ଆମ୍ଭମାନଙ୍କର ଜାତୀୟ ଜୀବନର ଗତି (ଅଗ୍ରସର ନ ହେଉ) ସମାନ ରଖିବା ନିମନ୍ତେ ପ୍ରାଣପଣେ ଚେଷ୍ଟାକରନ୍ତୁ ତାହାହେଲେ ଜଗତ ଆମ୍ଭମାନଙ୍କର ସେହି ଅହଙ୍କାର ପୂର୍ବରେ 'ବୃଥା' ବିଶେଷଣ ପ୍ରୟୋଗ କରନ୍ତା ନାହିଁ ।—କାଳ ପଶ୍ଚାତ୍ ଦିଗକୁ ମୁଖ ଫେରାଇ ଭ୍ରୂକୁଟୀ କରନ୍ତା ନାହିଁ ।

ପ୍ରସଙ୍ଗାଧୀନ ଆମ୍ଭେମାନେ ବହୁଦୂରରେ ଉପସ୍ଥିତ ହୋଇଅଛୁ । ଉତ୍କଳ ରମଣୀର ଗୌରବରୂପିଣୀ, କରଣ କୁଳପାବନୀ, ଗୃହାଶ୍ରମ ବାସିନୀ ତପସ୍ୱିନୀ, ମାଧବୀ ଦାସୀଙ୍କର କିଞ୍ଚିତ ପରିଚୟ ପ୍ରଦାନ ଆମ୍ଭମାନଙ୍କର ଉଦ୍ଦେଶ୍ୟ ।

ପ୍ରାୟ ପଞ୍ଚଦଶ ଶତାବ୍ଦୀର ମଧ୍ୟଭାଗରେ ଶ୍ରୀକ୍ଷେତ୍ର ଧାମରେ ମାଧବୀ କରଣକୁଳରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପ୍ରକୃତ କାଳ ନିର୍ଣ୍ଣୟ ଆମ୍ଭମାନଙ୍କ ପକ୍ଷରେ ଦୁରୂହ । ମାଧବୀ ଚୈତନ୍ୟଦେବଙ୍କ ଠାରୁ ବୟସ୍କା ଥିଲେ । କାରଣ ଶ୍ରୀ ଚୈତନ୍ୟଦେବ ତାଙ୍କର ପୁରୀ ଅବସ୍ଥାନ ସମୟରେ ତାହାଙ୍କୁ ବୃଦ୍ଧା ବୋଲି କହିଅଛନ୍ତି । ଶ୍ରୀ ଚୈତନ୍ୟଦେବଙ୍କର ଜନ୍ମ ୧୪୮୫ ଖ୍ରୀଷ୍ଟାବ୍ଦରେ । ଏଣୁ ସହଜରେ ଅନୁମାନ ହେଉଅଛି ଯେ ମାଧବୀ ପଞ୍ଚଦଶ ଶତାବ୍ଦୀର ମଧ୍ୟଭାଗରେ ଜନ୍ମଗ୍ରହଣ କରିଥିଲେ ।

ମାଧବୀ କରଣ କୁଳୋଦ୍ଭବା, ତାହାଙ୍କର ଦୁଇଭ୍ରାତା ଶ୍ରୀ ଶିଖୀ ମହାନ୍ତି ଓ ମୁରାରି ମହାନ୍ତି । ଶିଖୀ ମହାନ୍ତି ରାଜା ପ୍ରତାପରୁଦ୍ରଙ୍କର ଜଣେ ଉଚ୍ଚ ପଦସ୍ଥ କର୍ମଚାରୀ ଥିଲେ । ଏହି ଭଗିନୀ ତିନିଜଣଯାକ ଶ୍ରୀ ଚୈତନ୍ୟଦେବଙ୍କର ପରମ ଭକ୍ତ ଥିଲେ ।

ଭଗବାନ ଆଚାର୍ଯ୍ୟ ତାହାଙ୍କ ଗୃହରେ ଚୈତନ୍ୟ ଦେବଙ୍କର ନିମନ୍ତ୍ରଣ ଉପଲକ୍ଷ୍ୟରେ କୀର୍ତ୍ତନୀୟା ଛୋଟ ହରି ଦାସଙ୍କୁ ମାଧବୀଙ୍କ ନିକଟରୁ ଏକ ମହଣ ଚାଉଳ ଆଣିବାକୁ ପଠାଇଥିଲେ । ସେ ଏହି ରୂପ ମାଧବୀଙ୍କର ପରିଚୟ ଦେଇଥିଲେ:—

"ଶିଖୀ ମାହାତିର ଭଗ୍ନୀ ଶ୍ରୀ ମାଧବୀ ଦେବୀ
ବୃଦ୍ଧା ତପସ୍ୱିନୀ ଆର ପରମା ବୈଷ୍ଣବୀ"

ଚୈ. ଚ: (ଅନ୍ତ୍ୟଲୀଳା)

ଚରିତାମୃତର ଅନ୍ତ୍ୟଲୀଳାରେ ମଧ୍ୟ ମାଧବୀଙ୍କର ନାମ ଉଲ୍ଲେଖ ଅଛି ।

"ମାଧବୀ ଦେବୀ ଶିଖୀ ମାହାତିର ଭଗିନୀ
ଶ୍ରୀରାଧାର ଦାସୀ ମାଧ୍ୟେ ଯାର ନାମ ଗଣି ।"

ମାଧବୀ ଅତ୍ୟନ୍ତ ମେଧାବତୀ ଥିଲେ । ସାହିତ୍ୟ ଉଦ୍ୟାନରେ ତାହାଙ୍କର ପ୍ରତିଭା ସମ୍ୟକ ବିକଶିତ ହୋଇ ନ ଥିଲେହେଁ ଧର୍ମନନ୍ଦନ ବନରେ ତାହା ପାରିଜାତ ସମ ଶୋଭା ପାଉଅଛି । ତାହାଙ୍କର ଉନ୍ନତ ଚରିତ୍ର ଦେଖି କୃଷ୍ଣ ଦାସ କବିରାଜ ତାହାଙ୍କୁ 'ଦେବୀ' ଆଖ୍ୟା ପ୍ରଦାନ କରିଅଛନ୍ତି । ଚୈତନ୍ୟ ଚରିତାମୃତରେ ଉଲ୍ଲେଖ ଅଛି ଯେ ଚୈତନ୍ୟଦେବ ଯେଉଁ ଗୂଢ଼ଭକ୍ତି ତତ୍ତ୍ୱ ନିଜର ଭକ୍ତବୃନ୍ଦଙ୍କୁ ପ୍ରଦାନ କରିଥିଲେ ୩ ଜଣ ମାତ୍ର ତାହା ଗ୍ରହଣ କରିବାରେ ସମର୍ଥ ହୋଇଥିଲେ । "ନୀଳାଚଳବାସୀ ଶିଖୀ ମାହାତିର ଭଗ୍ନୀ ପ୍ରସିଦ୍ଧ ୩½ ରସିକ ଭକ୍ତେର ½ ଜନ ।"

( ଦୀନେଶ ଚନ୍ଦ୍ର ସେନ୍ )

ଚୈତନ୍ୟ ଚରିତାମୃତରେ ମଧ୍ୟ ଅଛି:—

"ପ୍ରଭୁ ଲେଖା କରେ ଯାରେ ରାଧିକାର ଗଣ
ଜଗତେର ମାଧ୍ୟେ ପାତ୍ର ସାଡ଼େ ତିନଜଣ
ସ୍ୱରୂପ ଗୋସାଇଁ ଆର ରାୟ ରାମାନନ୍ଦ
ଶିଖୀ ମାହାତୀ ତିନ ତାର ଭଗିନୀ ଅର୍ଦ୍ଧଜନ ।"

ଚୈତନ୍ୟଦେବ ମାଧବୀଙ୍କୁ କେବେ ହେଁ ଦେଖି ନଥିଲେ । ସନ୍ନ୍ୟାସ ଗ୍ରହଣ ପରେ ସେ ସ୍ତ୍ରୀ-ଲୋକର ମୁଖାବଲୋକନ କରୁନଥିଲେ । ମାଧବୀ ମଧ୍ୟ ତାହାଙ୍କର ବ୍ରତକୁ ସମ୍ମାନ ପ୍ରଦର୍ଶନ କରି ସମ୍ମୁଖୀନ ହୋଉ ନ ଥିଲେ ! ଅଲକ୍ଷିତ ଭାବରେ, ଅନ୍ତରାଳରେ ଥାଇଁ ସେ ଗୌରଲୀଳା ଦର୍ଶନ କରୁଥିଲେ, ଏବଂ ଯାହା ଦେଖୁଥିଲେ ତାହା ପଦରେ (କୀର୍ତ୍ତନ ପଦରେ) ବର୍ଣ୍ଣନ କରୁଥିଲେ । ଗୌରାଙ୍ଗ ଦର୍ଶନରୁ ବଞ୍ଚିତା ହୋଇ ମାଧବୀ ଖେଦରେ କହୁଅଛନ୍ତି—

"ଯେ ଦେଖିପ୍ରେ ଗୋରାମୁଖ ସେଇ ପ୍ରେମେ ଭାସେ
ମାଧବୀ ବଞ୍ଚିତା ହୈଲ ନିଜ କର୍ମ ଦୋଷେ ।"

ମାଧବୀ 'ଗୋରାମୁଖ' ଦର୍ଶନରୁ ବଞ୍ଚିତା ହୋଇ ସୁଦ୍ଧା ୩୨ ପ୍ରଧାନ ଭକ୍ତଙ୍କ ମଧ୍ୟରେ ଗଣ୍ୟା ହୋଇଅଛନ୍ତି । କିନ୍ତୁ ଯେଉଁମାନେ ସର୍ବଦା ଗୋରାମୁଖ ଦର୍ଶନ କରୁଥିଲେ ସେମାନଙ୍କ ମଧ୍ୟରୁ ଅନେକଙ୍କର ବିମଳା ଭକ୍ତିରେ ପୂର୍ଣ୍ଣାଧିକାରିତ୍ୱ ଜନ୍ମିଲି ନାହିଁ । କାର୍ଯ୍ୟହିଁ ମାନବକୁ ଅଧିକାର ଆଣିଦିଏ । ବାକ୍ୟ ଓ ବାହ୍ୟାଡ଼ମ୍ବର ବାୟୁସଖା ଅଗ୍ନିବତ୍ କାର୍ଯ୍ୟକୁ ବାଷ୍ପରେ ପରିଣତ କରେ—ତାହା ଶୂନ୍ୟରେ ମିଶିଯାଏ, କାର୍ଯ୍ୟରେ ଏକ ବିନ୍ଦୁ ମଧ୍ୟ ଦୃଷ୍ଟିଗୋଚର ହୁଏନାହିଁ । ମାଧବୀ କର୍ମକୁଶଳା, କର୍ତ୍ତବ୍ୟ-ସାଧନ ତତ୍ପରା—କର୍ମବୃକ୍ଷର ଫଳରୂପ ଅମୃତ ଭକ୍ତିରସାସ୍ୱାଦନ କଲେ ।

ପୂର୍ବରୁ କୁହାଯାଇଅଛି ତପସ୍ୱିନୀ ମାଧବୀ ଗୃହାଶ୍ରମ ବାସିନୀ । ଗୃହାଶ୍ରମରେ ସ୍ତ୍ରୀର ଯାହା କର୍ତ୍ତବ୍ୟ, ସେ ତାହା ପାଳନ କରୁଥିଲେ । ବୋଧହୁଏ ବୈଧବ୍ୟପରେ ଉତ୍କଳର କରଣକୁଳରେ ପ୍ରାୟ ଯେପରି ହୋଇଥାଏ—ସେ ତାଙ୍କର ପିତୃଗୃହରେ ବାସ କରୁଥିଲେ । ମାଧବୀ ନିରକ୍ଷର ନଥିଲେ, କିମ୍ବା ଅପରପ୍ରାଇମେର ପାଶ୍‌କରି 'ପ୍ରାଣେଶ୍ୱର ଚରଣ କମଳେଷୁ' ପର୍ଯ୍ୟନ୍ତ ତାହାଙ୍କର ବିଦ୍ୟାର ସୀମା ନଥିଲା । ତାହାଙ୍କ ସମ୍ବନ୍ଧରେ ଶ୍ରୀଯୁକ୍ତ ଜଗବନ୍ଧୁ ଭଦ୍ର ଯାହା କହୁଅଛନ୍ତି, ତାହା ଉଲ୍ଲେଖଯୋଗ୍ୟ । "ମାଧବୀ ପୁରୁଷ ପରି ପଣ୍ଡିତ ଥିଲେ ଏବଂ ପୁରୁଷ ପରି ତପସ୍ୟା କରୁଥିଲେ । ଏହି ହେତୁରୁ ବୈଷ୍ଣବ ଗ୍ରନ୍ଥରେ ଏମାନଙ୍କୁ 'ଜନଭ୍ରାତା' ବୋଲଯାଇଅଛି ଏବଂ ତାହାଙ୍କର ଭ୍ରାତାମାନେ ମଧ୍ୟ ତାଙ୍କପ୍ରତି ଭ୍ରାତା ସଦୃଶ ସମ୍ମାନ ପ୍ରଦର୍ଶନ କରୁଥିଲେ । ମାଧବୀ ମଧ୍ୟ

ଅଧିକାଂଶ ପଦର ଭଣିତାରେ ଆପଣାକୁ 'ମାଧବୀ ଦାସ' କହି ଅଛନ୍ତି ।"
'ପାଣ୍ଡିତ୍ୟ ହୀନାଃ କବୟୋ ଭବନ୍ତି' ଯୁକ୍ତି ମାଧବୀଙ୍କ ଠାରେ ଖଟିନାହିଁ ।"
"ମାଧବୀ କୌଣସି ଦେବତା ବା ଦେବୀ ପ୍ରଭାବରୁ ଅଳ୍ପବିଦ୍ୟାରେ କବିତା ରଚନା କରିବାକୁ ଅବସର ହୋଇ ନଥିଲେ । ସେ କୌଣସି କାବ୍ୟାଦି ରଚନା କରିଛନ୍ତି କି ନାହିଁ, ତାହା ଏପର୍ଯ୍ୟନ୍ତ ଅନୁସନ୍ଧିତ୍ସୁମାନଙ୍କର ଦୃଷ୍ଟିପଥରେ ପଡ଼ିନାହିଁ । କେବଳ ବଙ୍ଗ ଭାଷାରେ ରଚିତ କେତେକଗୁଡ଼ିଏ କୀର୍ତ୍ତନପଦ, ପଦାବଳୀ ସଂଗ୍ରହ ଗ୍ରନ୍ଥମାନଙ୍କରେ ସ୍ଥାନ ପାଇଅଛି । ଦୁଃଖର ବିଷୟ, ତାହାର ସଂଖ୍ୟା ଅତି ଅଳ୍ପ ।

ଅଧିକାଂଶ ପଦରେ କେବଳ ଗୌର ଲୀଳା ବର୍ଣ୍ଣିତ ହୋଇଅଛି । କବି ଚୈତନ୍ୟ ଦେବଙ୍କର ଲୀଳା ଦେଖି ମୁଗ୍‌ଧା ହୋଇଥିଲେ । ସେହିଭାବ ସେ ସରଳ ଛନ୍ଦରେ ପ୍ରକାଶ କରିଅଛନ୍ତି । ତାହା ମଧ୍ୟରୁ କେତେକ ନିମ୍ନରେ ଉଦ୍ଧୃତ ହେଲା—

( ୧ )

ଶ୍ୟାମରେ ଗୌରବରଣ ଏକଦେହ ।
ପାମର ଜନ ଇଥେ କରଇ ସନ୍ଦେହ ।
ସୌରଭେ ଆଗୋର ମୂରତି ରସସାର ।
ପାକଲ ଭେଳ ଯୈଛେ ଫଳ ସହକାର ।
ଗୋପ ଜନମ ପୁନଃ ଦ୍ୱିଜ ଅବତାର ।
ନିଗମ ନା ପାୟଇ ନିଗୂଢ଼ ବିହାର ।
ପ୍ରକଟ କରଲ ହରିନାମ ବଖାନ ।
ନାରୀ ପୁରୁଷ ମୁଖେ ନାଶୁନିୟେ ଆନ ।
କର ଗୌରଚରଣ କମଲ ମଧୁପାନ ।
ସରସ ସଙ୍ଗୀତ ମାଧବୀ ଦାସ ଭାନ ।

( ୨ )

ଆନନ୍ଦେ ନାଚତ ସଙ୍ଗେ ଭକତ ଗୌର କିଶୋର ରାଜ ।
ଫାଗୁ ଉଝାଲ କରେ ଫେଲଫେଲ ନୀଲାଚଲ ପୁରୀ ମାଝ ।
ଶୁନିୟା ନାଗରୀ, ପ୍ରେମ ତ ଆଗୁରୀ, ଧାଇୟା ଚଲିଲ ବାଟେ ।
ହେରିୟା ଗୌରେ, ପଡ଼ିଲ ଫାମରେ, ବଦନ ଗୃହିୟା ଥାକେ ।

ଦୁ ବାହୁ ତୁଳାୟୀ, ବଡ଼ାୟୁ ନାଚୟୀ, ଭକତ ପଣେର ସଙ୍ଗ ।
ନୀଳାଚଳ ବାସୀ, ମନେ ଅଭିଳାଷୀ, କୌତୁକେ ଦେଖୟେ ରଙ୍ଗ ।
ବାଜେ କରତାଳ ବୋଲେ ଭଲଭଲ, ଆରବାଜେ ତାହେ ଖୋଳ ।
ମାଧବ ଦାସ, ମନତେ ଉଲ୍ଲାସ, ସଦାବୋଲେ ହରିବୋଲ ।

( ୩ )

ନିତ୍ୟାନନ୍ଦ ସହିତ ମୁକୁନ୍ଦ ଗଦାଧରେ ।
ଦେଖିଲେନ ଗୌରଚନ୍ଦ୍ର ସାର୍ବଭୌମ ଘରେ ।
ପ୍ରତପ୍ତ କାଞ୍ଚନ କାନ୍ତି ଅରୁଣ ବସନ ।
ପ୍ରେମେ ଛଲଛଲ ଦୁଇ ଅରୁଣ ନୟନ ।
ଆଜାନୁ ଲମ୍ବିତ ଭୁଜ ଚନ୍ଦନେ ଶୋଭିତ ।
ଉନ୍ନତ ନାସିକା ଊର୍ଦ୍ଧ୍ୱ ତିଲକ ମଣ୍ଡିତ ।
ଗୋପୀନାଥ ଗୃହେ ଆର ସାର୍ବଭୌମ କାଶୀ ।
ଗୌରରୂପ ଦେଖେ ଯତ ନୀଳାଚଳ ବାସୀ ।
ଦକ୍ଷିଣେ ନିତାଇ ବସି ବାମେ ଗଦାଧର ।
ମିଳିଲେନ ଗୌର ଗୃହେର ଯତ ଅନୁଚର ।
ଯେ ଦେଖୟେ ଗୌରମୁଖ ସେଇ ପ୍ରେମେ ଭାସେ ।
ମାଧବୀ ବଞ୍ଚିତ ହଇଲ ନିଜ କର୍ମ ଦୋଷେ ।

( ୪ )

ନୀଳାଚଳ ହୈତେ, ଶଚୀରେ ଦେଖିତେ, ଆଇସେ ଜଗଦାନନ୍ଦ ।
ରହି କତ ଦୂରେ, ଦେଖେ ନଦୀୟାରେ, ଗୋକୁଲପୁରରେ ଚନ୍ଦ ।
ଭାବୟେ ପଣ୍ଡିତ ରାୟ
ପାଇକନା ପାଇ, ଶଚୀରେ ଦେଖିତେ ଏହି ଅନୁମାନେ ଯାୟ । ଧ୍ରୁ ।
ଲତା ତରୁଯତ, ଦେଖେ ଶତଶତ, ଅକାଳେ ଖସିଛେ ପାତା ।
ରବିର କିରଣ, ନା ହୟ ଫୁଟନ, ମେଘଗଣ ଦେଖେ ରାତା ।
ଶାଖେ ବସି ପାଖି, ମୁଦି ଦୁଟି ଆଁଖି, ଫଲଦଲ ତେୟାଗିୟା ।
କାନ୍ଦୟେ ଫୁକରି,ଡୁକରି ଡୁକରି,ଗୌରଚନ୍ଦ୍ର ନାମ ଲୈୟା ।
ଧେନୁ ଯୂଥେ ଯୂଥେ, ଦାଣ୍ଡାଇୟା ପଥେ, କାର ମୁଖେ ନାହିଁ ରା ।
ମାଧବୀ ଦାସେର, ଠାକୁର ପଣ୍ଡିତ ପଡ଼ିଲ ଆଛାଡ଼ିଗା ।

କି ସୁନ୍ଦର ପଦ ବିନ୍ୟାସ ! ଉତ୍କଳ ରମଣୀର ବଙ୍ଗ ଭାଷା ଉପରେ କି ଅଦ୍ଭୁତ କ୍ଷମତା ! ଭାଷାନ୍ତରରେ ଏହିପରି ପଦବିନ୍ୟାସ ଯେ କୌଣସି ଆଧୁନିକ ଉଚ୍ଚଶିକ୍ଷିତ ଉତ୍କଳୀୟ ପକ୍ଷରେ ଗୌରବର ବିଷୟ ହୁଅନ୍ତା ।

କେହି ଆପତ୍ତି କରି ପାରନ୍ତି; ସେ ସମୟରେ ମୁଦ୍ରାଯନ୍ତ୍ର ନଥିଲା ବା ବଙ୍ଗଳା ପୁସ୍ତକର ମଧ୍ୟ ବହୁଳ ପ୍ରଚାର ନଥିଲା । ମାଧବୀ ବଙ୍ଗଳା କେଉଁଠାରୁ ଶିଖିଲେ ? ତହିଁର ଉତ୍ତର ସ୍ୱରୂପ ଆମ୍ଭେମାନେ ଏତିକି କହିପାରୁଁ—ମାଧବୀ ପୁସ୍ତକରୁ ଭାଷାଶିକ୍ଷା କରିନାହାନ୍ତି । ବଙ୍ଗବାସୀଙ୍କର ସଂସର୍ଗହିଁ ତାହାଙ୍କୁ ଭାଷାରେ ପଣ୍ଡିତା କରାଇଥିଲା । ଅକ୍ଷର ପରିଚୟ ପରେ ହସ୍ତଲିଖିତ କୌଣସି ବୈଷ୍ଣବ ଗ୍ରନ୍ଥ ମଧ୍ୟ ସେ ଆଲୋଚନା କରିଥିବେ । ନିରକ୍ଷର ଉତ୍କଳଭ୍ରାତା କଲିକତା ଯାଇ ଯଦି ବଙ୍ଗଳା କହିପାରେ, ମେଧାବିନୀ ମାଧବୀଙ୍କର ଭାଷାଶିକ୍ଷାର ବିଚିତ୍ରତା କଅଣ ?

ବଙ୍ଗ ଭାଷାର ଐତିହାସିକ ଶ୍ରୀଯୁକ୍ତ ଦୀନେଶ ଚନ୍ଦ୍ର ସେନ୍ ମାଧବୀଙ୍କର ପଦଗୁଡ଼ିକୁ "ଅତି ସୁନ୍ଦର" ବୋଲି କହିଅଛନ୍ତି । ବାସ୍ତବିକ୍ ତାହା ଅତି ସୁନ୍ଦର । ଏହି ସଂକ୍ଷିପ୍ତ ସମାଲୋଚନା ଦ୍ୱାରା ମାଧବୀଙ୍କର ମର୍ଯ୍ୟାଦା ଉତ୍ତମରୂପେ ରକ୍ଷିତ ହୋଇଛି । ସେ ମାଧବୀଙ୍କୁ ମଧ୍ୟ ବଙ୍ଗଳାର ପଦକର୍ତ୍ତାମାନଙ୍କ ମଧ୍ୟରେ ଯଥାଯୋଗ୍ୟ ଆସନ ଦେଇଅଛନ୍ତି । ଆହୁରି ମଧ୍ୟ ପ୍ରାଚୀନ ସ୍ତ୍ରୀ-ଶିକ୍ଷା ପ୍ରସଙ୍ଗରେ ମାଧବୀଙ୍କର ନାମ ସର୍ବାଗ୍ରେ ଉଲ୍ଲେଖ କରି ଅଛନ୍ତି, ଏହା ଓଡ଼ିଆ ଲଳନା ପକ୍ଷରେ କମ୍ ଗୌରବର ବିଷୟ ନୁହେଁ ।

ମାଧବୀ ଯେ କେବଳ ବଙ୍ଗଭାଷାରେ ରଚନା କରିଅଛନ୍ତି, ତା' ନୁହେଁ । ତାହାଙ୍କର ମାତୃଭାଷାରେ ମଧ୍ୟ କେତେକ ପଦ ଅଛି । କିନ୍ତୁ ଦୁର୍ଭାଗ୍ୟ, ଉତ୍କଳୀୟମାନେ ଉକ୍ତ ପଦର ମାଧୁର୍ଯ୍ୟରୁ ବଞ୍ଚିତ । ତାହା ଏପର୍ଯ୍ୟନ୍ତ ଦୃଷ୍ଟିଗୋଚର ହୋଇନାହିଁ । 'ବନର ମାଧବୀପରି ବନେ ଫୁଟି ଝଡ଼ିଛି ।' ସ୍ୱର୍ଗୀୟ ହାରାଧନ ଦତ୍ତ ଭକ୍ତିନିଧି ମହାଶୟ କହନ୍ତି ଯେ "ପ୍ରଭୁଙ୍କର ପୁରୀଲୀଳା ସମ୍ବନ୍ଧରେ ତାହାଙ୍କର ଯାହାକିଛି ସ୍ମରଣ ଓ ଯେତେବେଳେ ଯେଉଁ ଭାବ ମନ ମଧ୍ୟରେ ଉଦିତ ହେଉଥିଲା, ଶ୍ରୀକୃଷ୍ଣଲୀଳା ସମ୍ବନ୍ଧରେ ଓଡ଼ିଆ ଓ ବଙ୍ଗଭାଷାରେ ସେ ପଦ ରଚନା କରୁଥିଲେ । 'ପଦ ସମୁଦ୍ରରେ' ମାଧବୀକୃତ ଅନେକ ଓଡ଼ିଆ ପଦ ଅଛି ।" ଯଦି କେହି ମାଧବୀଙ୍କର ଓଡ଼ିଆ ପଦଗୁଡ଼ିକ ସଂଗ୍ରହ କରି ପ୍ରକାଶ କରନ୍ତେ,

ତାହାହେତୁ ଉତ୍କଳର ଗୌରବ ସ୍ତମ୍ଭରୂପେ ତାହା ଚିରକାଳ ବିରାଜମାନ ହୁଅନ୍ତା ।

ମାଧବୀଙ୍କର ହସ୍ତାକ୍ଷର ମଧ୍ୟ ଅତି ସୁନ୍ଦର ଥିଲା । ତାହା ସଦ୍ଭାବ ପାଣ୍ଡିତ୍ୟ ଓ କବିତ୍ୱ ମିଶି ସ୍ୱର୍ଣ୍ଣଖଚିତ ଗଜଦନ୍ତବତ୍ ଅପୂର୍ବ ଶ୍ରୀ ଧାରଣ କରିଥିଲା । ମାଧବୀଙ୍କର ଏହି ଗୁଣାବଳୀ ପାର୍ଥିବ ଜଗତରେ ଅପୁରସ୍କୃତ ବା ଅନାଦୃତ ହୋଇନାହିଁ । ଭକ୍ତିପ୍ରଧାନ, ଗୁଣଗ୍ରାହୀ, ପ୍ରଜାବତ୍ସଳ ରାଜା ପ୍ରତାପରୁଦ୍ର ମାଧବୀଙ୍କର ଗୁଣରେ ମୁଗ୍ଧ ହୋଇ ତାହାଙ୍କୁ ଜଗନ୍ନାଥ ଦେବଙ୍କ ମନ୍ଦିରରେ 'ଲେଖନାଧିକାରୀ' ପଦରେ ନିଯୁକ୍ତ କରିଥିଲେ । ଭକ୍ତନିଧି ମହୋଦୟ ଯେ ସମ୍ବନ୍ଧରେ ଏହିରୂପ ଲେଖିଅଛନ୍ତି "ମାଧବୀର ଏହି ସକଳ ଗୁଣେ ବିଶେଷତଃ ତାହାର ହସ୍ତାକ୍ଷର ସୁନ୍ଦର ଶୁଣି ବିଲ୍ମୟ ରାଜା ପ୍ରତାପରୁଦ୍ର ଉହାଁକେ ଶ୍ରୀ ମନ୍ଦିରର ଲେଖନାଧିକାରୀ ପଦେ ନିଯୁକ୍ତ କରେନ୍" । ସ୍ତ୍ରୀଲୋକର ସାଧାରଣ କାର୍ଯ୍ୟରେ ନିୟୋଗ ଅଶ୍ରୁତପୂର୍ବ । ପାଶ୍ଚାତ୍ୟ ଦେଶରେ ନାରୀମାନେ ଯେ କେବଳ ସାଧାରଣ କାର୍ଯ୍ୟରେ ନିଯୁକ୍ତ ହୋଇଥାନ୍ତି—ଆମ୍ଭମାନଙ୍କର ତାହା ହେବନାହିଁ, ହୋଇନଥିଲା, ବା ହୋଇପାରିବ ନାହିଁ—ଏହି ଭ୍ରାନ୍ତ ଧାରଣା ଏହିଠାରେ ଧୂଳିସାତ୍ ହେଉଅଛି ।

ବୈଷୟିକ, ନୈତିକ ବା ଧର୍ମ ସମ୍ବନ୍ଧୀୟ କୌଣସି ବୃତ୍ତିର ଅନୁଶୀଳନରେ ମାଧବୀ ତ୍ରୁଟି କରି ନଥିଲେ । ସ୍ଥଳରେ ତାଙ୍କୁ ଉତ୍କଳର ଆଦର୍ଶ ମହିଳା କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଭାଇ ଉତ୍କଳବାସୀ ! ଥରେ ଅତୀତ ପ୍ରତି ଦୃଷ୍ଟିନିକ୍ଷେପ କର, କହ "କଣ ଥିଲି, କଣ ହେଲି"—କେବଳ କହିଲେ ହେବନାହିଁ— ନିଜର ଅଯୋଗ୍ୟତା ଚିନ୍ତାକରି ଅଜସ୍ର ଅଶ୍ରୁ ବର୍ଷଣ କର । ସେଇ ଅଶ୍ରୁସିକ୍ତ ବକ୍ଷରେ ବିପଦର ସହସ୍ର ପଦାଘାତ ସହ୍ୟକର । ଅତୀତ ଗୌରବର ପୁନରୁଦ୍ଧାର ଲାଗି ପ୍ରାଣପଣେ ଚେଷ୍ଟାକର । ଆମ୍ଭମାନଙ୍କର ଏହି ଦୈନ୍ୟ ଅଳ୍ପଦିନରେ ଦୂରୀଭୂତ ହେବ । ଆମ୍ଭେମାନେ ଶିକ୍ଷିତ ଭାଇମାନଙ୍କ ନିକଟରେ ଅମ୍ଳାନ ବଦନରେ ମୁଣ୍ଡ ଟେକି କଥା କହି ପାରିବା । ଆମ୍ଭେମାନେ ଏକ ସମୟରେ "ସଭ୍ୟ" ଥିଲୁଁ କହି ଅହଙ୍କାର କଲେ ଚଳିବ ନାହିଁ । କଣ ଅଛୁ ଜଗତର ସମକ୍ଷରେ ଦେଖାଇବାକୁ ହେବ । ଅତୁଳୈଶ୍ୱର୍ଯ୍ୟଶାଳୀ

ଯଦି ଭିକ୍ଷାବୃତ୍ତି ଅବଲମ୍ବନ କରେ, ତାକୁ ଭିକ୍ଷୁକ ଭିନ୍ନ ଅନ୍ୟ କିଛି ବୋଲିଯାଇ ପାରିବ କି ?

ମାତଃ ମାଧବୀ ! ତୁମ୍ଭର କଥା ଆଲୋଚନା କରି ଆଜି ଆମ୍ଭେମାନେ ଧନ୍ୟ ହୋଇଅଛୁଁ । ତୁମ୍ଭର ପାଣ୍ଡିତ୍ୟ ତୁମ୍ଭର କବିତ୍ୱ ତୁମ୍ଭର କର୍ତ୍ତବ୍ୟ-ପରାୟଣତା, ତୁମ୍ଭର ଧାର୍ମିକତାର ସୌରଭରେ "ଉତ୍କଳ ଶ୍ମଶାନ" ଚିରକାଳ ଆମୋଦିତ ହେବ । ମାତଃ—ଗୋଲକ ଧାମରୁ ଅଧଃ ପତିତା, ଦୀନା, ଅଜ୍ଞାନ ତମିସ୍ରାବରଣା ଉତ୍କଳ ରମଣୀପ୍ରତି କୃପାଦୃଷ୍ଟି ନିକ୍ଷେପ କର । ତୁମର ଜୀବନୀ ଶକ୍ତି ସେମାନଙ୍କ ଦେହରେ ସଞ୍ଚାର କର । ସେମାନେ ଉପଯୁକ୍ତା ଗୃହିଣୀ ହୁଅନ୍ତୁ । ଉପଯୁକ୍ତା କନ୍ୟା, ଭଗିନୀ, ସ୍ତ୍ରୀ ଓ ମାତା ହୁଅନ୍ତୁ । ତୁମ୍ଭପରି ପଣ୍ଡିତା ହୁଅନ୍ତୁ, କର୍ତ୍ତବ୍ୟ ପରାୟଣା ହୁଅନ୍ତୁ, ଓ ବୀର ପ୍ରସବିନୀ ହୁଅନ୍ତୁ । ତୁମ୍ଭର ଆଦର୍ଶ ସର୍ବଦା ଉତ୍କଳ ରମଣୀର ସମ୍ମୁଖରେ ରହୁ । ଅଧଃ-ପତିତ ଉତ୍କଳର ଦୁର୍ଦ୍ଦଶା ଦୂର ହେଉ ।



## ଶୋକବାର୍ତ୍ତା ଓ ବିବରଣୀ

ବ୍ରଜସୁନ୍ଦରଙ୍କ ତିରୋଧାନର ପରେ ଓଡ଼ିଶାର ବିଭିନ୍ନ ଇଂରାଜୀ ଓ ଓଡ଼ିଆ ପତ୍ର ପତ୍ରିକାରେ ତଥା ଭାରତର ବିଭିନ୍ନ ପତ୍ର ପତ୍ରିକାରେ ବ୍ରଜସୁନ୍ଦରଙ୍କ ସମ୍ପର୍କରେ ଯେଉଁସବୁ ସମ୍ବାଦ ପ୍ରକାଶିତ ହୋଇଥିଲା, ସେଗୁଡ଼ିକରେ ବ୍ରଜସୁନ୍ଦରଙ୍କ ମହନୀୟ ଜୀବନୀ ସମ୍ପର୍କୀୟ ବହୁ ଉପାଦେୟ ଅଭିମତ ନିହିତ । ଏଣୁ ତତ୍କାଳୀନ ପତ୍ର ପତ୍ରିକାରେ ପ୍ରକାଶିତ ସେହି ସବୁ ବିବରଣୀ ଏଠାରେ ଏକତ୍ର ସନ୍ନିବେଶିତ ହେଲା ।

ସଂପାଦକ

## ବ୍ରଜ ବାବୁଙ୍କ ତିରୋଧାନ—

ଶ୍ରୀଯୁକ୍ତ ବ୍ରଜସୁନ୍ଦର ଦାସଙ୍କ ତିରୋଧାନ ଦ୍ୱାରା ଓଡ଼ିଶାର ମହତ୍ତ୍ୱ, ସଦାଶୟତା ଓ ଆଭିଜାତ୍ୟର ଗୋଟିଏ ବରିଷ୍ଠ ସୂତ୍ର ଛିନ୍ନ ହୋଇ-ଯାଇଅଛି । ରାଜନୀତି କିମ୍ବା ସାଧାରଣ କ୍ଷେତ୍ରରେ ତାହାଙ୍କର ସ୍ଥାନ ନିର୍ଦ୍ଦେଶ ଏଠାରେ ଅଭିପ୍ରାୟ ନୁହେଁ । ତାହାଙ୍କର କବିପ୍ରାଣ ଓ ସାହିତ୍ୟିକ ଜୀବନହିଁ ଓଡ଼ିଶାର ବହୁ ଯୁବକଙ୍କୁ ଅନୁପ୍ରାଣିତ କରୁଅଛି । ତାହାଙ୍କ ପ୍ରକାଶିତ 'ମୁକୁର' ପତ୍ରିକା ଖଣ୍ଡି ଓଡ଼ିଆ ସାହିତ୍ୟର ଅତି ଆଦରଣୀୟ ବସ୍ତୁ ଥିଲା । ପ୍ରବୀଣ ଓ ନବୀନ ଲେଖକମାନଙ୍କୁ ସେ ଯେଉଁ ଉତ୍ସାହ ଦାନ କରୁଥିଲେ, ଓଡ଼ିଶାରେ ତାହା ଅତୁଳନୀୟ । ସଂକୀର୍ଣ୍ଣତାର ବହୁ ଊର୍ଦ୍ଧ୍ୱରେ ରହି ତାହାଙ୍କର ମଧୁର ବ୍ୟବହାର ଓ ସୁମହତ ସ୍ୱଭାବ ଉତ୍କଳୀୟ କୌଳିନ୍ୟର ପ୍ରଧାନ ଦ୍ୟୋତକ ଥିଲା । ତାହାଙ୍କ ମୃତ୍ୟୁରେ ଉତ୍କଳମାତା ଜଣେ ନିର୍ମଳ ନିଷ୍ଠାପର ଓ ନିର୍ଭୀକ ସ୍ନେହର ଦୁଲାଳଙ୍କୁ ହରାଇ ଅଛନ୍ତି । ସେହି ଅମୂଲ୍ୟ ସ୍ମୃତି ଉଦ୍ଦେଶ୍ୟରେ ଆମ୍ଭେମାନେ ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଅଛୁ ।

**ଓଡ଼ିଆ ସାହିତ୍ୟ ପରିଷଦ ମୁଖପତ୍ର—ସହକାର—୨୪ଶଭାଗ ୪ର୍ଥ ଓ ୫ମ ସଂଖ୍ୟା—ପୃ ୧୬୨**
**ସଂପାଦକ—କାଳନ୍ଦୀ ଚରଣ ପାଣିଗ୍ରାହୀ**

## ଶ୍ରୀଯୁକ୍ତ ବ୍ରଜସୁନ୍ଦର ଦାସ ଆଉ ନାହାନ୍ତି

ଆଜି ୯ ତାରିଖ ଘ ୧୧।୦ମିନିଟରେ ଓଡ଼ିଶା ଆସେମ୍ବ୍ଲିର ଜଣେ ବରିଷ୍ଠ ସଭ୍ୟ ଏବଂ ଓଡ଼ିଶା ଜମିଦାର ସମ୍ପ୍ରଦାୟର ଜଣେ ମୁଖ୍ୟ ପ୍ରତିନିଧି ଓ ଓଡ଼ିଶାର ସାଧାରଣ କ୍ଷେତ୍ରରେ ଜଣେ ପ୍ରଧାନ ବ୍ୟକ୍ତି ଶ୍ରୀଯୁକ୍ତ ବ୍ରଜସୁନ୍ଦର ଦାସଙ୍କର ତାଙ୍କ କଟକ ବାସଭବନରେ ୬୪ବର୍ଷ ବୟସରେ ପରଲୋକ ହୋଇଯାଇଛି । ସେ ୧୮୮୦ ଖ୍ରୀଷ୍ଟାବ୍ଦ ଜୁଲାଇ ୨ତାରିଖରେ ଜନ୍ମ ଗ୍ରହଣ କରିଥିଲେ । ଗତ ପନ୍ଦର ତାରିଖଠାରୁ ସେ ଡବଲ ନିମୋନିଆ ରୋଗରେ ପୀଡ଼ିତ ଥିଲେ । ଡାକ୍ତର ରାଏସାହେବ ବାଳ ମୁକୁନ୍ଦ ନାୟକ, ବନ ବିହାରୀ ପଟ୍ଟନାୟକ, ମହେନ୍ଦ୍ରଚନ୍ଦ୍ର ମିଶ୍ର, ବିଶ୍ୱନାଥ କର, ଗୁରୁଚରଣ ରାୟ,

ରବନ ସାହୁ, ଜଗନ୍ନାଥ ଦାସ ପ୍ରମୁଖ ତାଙ୍କୁ ଚିକିତ୍ସା କରୁଥିଲେ । ଗତ ଭଲଦିନ ତଳେ ତାଙ୍କ ଅବସ୍ଥା ଟିକିଏ ଭଲ ଆଡ଼କୁ ଆସିଥିଲା, ଗତକାଲି ରାତିରେ ତାଙ୍କର ହୃତପିଣ୍ଡ ଅତି ଦୁର୍ବଳ ବୋଲି ଡାକ୍ତରମାନେ ଘୋଷଣା କଲେ । ଆଜି ଘ୧୧।୧୦ ମିନିଟରେ ସବୁ ଶେଷ ହୋଇଗଲା । ସେ ତାଙ୍କର ସହଧର୍ମିଣୀଙ୍କ ଛଡ଼ା ୪ଟି କନ୍ୟା ଓ ୨ଟି ପୁତ୍ରଙ୍କୁ ଶୋକ ସାଗରରେ ଭସାଇ ଦେଇଗଲେ । ତାଙ୍କର ବିୟୋଗ-ବାର୍ତ୍ତା ପାଇ ପ୍ରଧାନ ମନ୍ତ୍ରୀ, ଅର୍ଥମନ୍ତ୍ରୀ, କନିକାର ଟିକାୟତ ସାହେବ, ଜିଲା ମାଜିଷ୍ଟ୍ରେଟ ମିଃ ସିଂହ, ଅତିରିକ୍ତ ଜିଲା ମାଜିଷ୍ଟ୍ରେଟ ରାୟ ସାହେବ ଦୁର୍ଗାଚରଣ ଦାସ, ରାୟବାହାଦୁର ଭିକାରୀ ଚରଣ ପଟ୍ଟନାୟକ, ମି: ତ୍ରିପାଠୀ, ମି: ଲାଲ ମୋହନ ପଟ୍ଟନାୟକ, ମିସ-ନାୟକ, ଯଦୁମଣି ମଙ୍ଗରାଜ, ଚନ୍ଦ୍ରମଣି ଆଚାର୍ଯ୍ୟ, ହରିହର ମହାପାତ୍ର, ମଧୁସୂଦନ ମହାନ୍ତି ପ୍ରମୁଖ ବହୁବିଶିଷ୍ଟ ଭଦ୍ରବ୍ୟକ୍ତି ଓ ଭଦ୍ରମହିଳା ତାଙ୍କର ପରିବାର ବର୍ଗଙ୍କୁ ସାନ୍ତ୍ୱନା ଦେବାପାଇଁ ଆସିଥିଲେ । ତାଙ୍କର ଶବକୁ ଏକ ବିରାଟ ପଟୁଆରରେ ସତୀଚଉରା ଶ୍ମଶାନ ଘାଟକୁ ନିଆଯାଇଥିଲା । ବହୁ-ବିଶିଷ୍ଟ ଲୋକ ଏ ପଟୁଆରରେ ଯୋଗ ଦେଇଥିଲେ ।

ସ୍ୱର୍ଗୀୟ ବ୍ରଜସୁନ୍ଦର ଆଜୀବନ ଓଡ଼ିଶାର ସାଧାରଣ କ୍ଷେତ୍ରରେ ଏକ ବିଶିଷ୍ଟ ସ୍ଥାନ ଅଧିକାର କରିଥିଲେ । ସେ ଜଣେ ବିଶିଷ୍ଟ ସାହିତ୍ୟିକ ଥିଲେ । "ମୁକୁର" ସାହିତ୍ୟ ପତ୍ରିକାର ସମ୍ପାଦକରୂପେ ଓଡ଼ିଆ ସାହିତ୍ୟକୁ ତାଙ୍କର ଅବଦାନ ସାମାନ୍ୟ ନୁହେଁ । ଉଦୀୟମାନ ଓଡ଼ିଆ ସାହିତ୍ୟିକ ଓ ଲେଖକ-ମାନେ ଯେତେବେଳେ ଅନ୍ୟଠାରୁ କୌଣସି ଉତ୍ସାହ ବା ପ୍ରେରଣା ପାଉ ନଥିଲେ, ସେତେବେଳେ ସେ ମାସିକପତ୍ରରେ ଲେଖକମାନଙ୍କର ପ୍ରକାଶିତ ପ୍ରବନ୍ଧ ଓ କବିତା ଇତ୍ୟାଦି ପାଇଁ ପାରିଶ୍ରମିକ ଦେବା ପ୍ରଥା ଆରମ୍ଭ କରି-ଥିଲେ । କେନ୍ଦ୍ର ବ୍ୟବସ୍ଥା ସଭାରେ, ବିହାର ଓଡ଼ିଶା କାଉନସିଲ୍‌ରେ ସେ ଅନେକ କାଳ ସଭ୍ୟଥିଲେ । ଉତ୍କଳ ସମ୍ମିଳନୀର ଜଣେ ପ୍ରଧାନ ଉଦ୍ୟୋକ୍ତା, ଓଡ଼ିଆ ଦେଶମିଶ୍ରଣ ଆନ୍ଦୋଳନର ଜଣେ ପ୍ରଧାନ କର୍ତ୍ତା, ଉତ୍କଳ ସଙ୍ଗୀତ ସମାଜର ସଭାପତି, ଓଡ଼ିଆ ସ୍ୱାର୍ଥରକ୍ଷା କମିଟିର ସଭାପତି, ଛିନ୍ନମସ୍ତା-ପୂଜାର ପ୍ରଥମ ପୁରୋଧାରୂପେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ଓ ବିଚ୍ଛିନ୍ନ ଅଞ୍ଚଳ ମିଶ୍ରଣପାଇଁ ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସେ ନୀରବରେ କାର୍ଯ୍ୟକରୁଥିଲେ । ରାଜନୀତି କ୍ଷେତ୍ରରେ ସେ ଜଣେ ଉଦାରପନ୍ଥୀ ଥିଲେ ମଧ୍ୟ ଓଡ଼ିଶାର ନୀଚ ରାଜନୀତିର ସେ ବହୁତ ଉଚ୍ଚରେ ଥିଲେ । ତାଙ୍କପରି ଉଦାର ଓ

ହୃଦୟବାନ ଲୋକ ଆଜକାଲି ବିରଳ । ଏହି ଶେଷ ପୀଡ଼ାର ଅବ୍ୟବହିତ ପୂର୍ବରୁ ସେ ପୁରୀରେ ଲାଟସାହେବଙ୍କ ସଭାପତିତ୍ୱରେ ବସିଥିବା ମନ୍ତ୍ରିମଣ୍ଡଳ ବୈଠକକୁ ଭୁ ଭୂମା ଜଳ ପ୍ରପାତକୁ ଓଡ଼ିଶାର ଜାତୀୟ ସମ୍ପଦରୂପେ ସମ୍ପୂର୍ଣ୍ଣଭାବେ ଓଡ଼ିଆଙ୍କ ଉପକାର ପାଇଁ କିଭଳି ବ୍ୟବହାର କରିବା ଉଚିତ, ତାହା ଦର୍ଶାଇ ଏକ ଦୀର୍ଘ ପତ୍ର ଲେଖିଥିଲେ ଓ ଲାଟସାହେବଙ୍କୁ ଏ ବିଷୟରେ ବିଶେଷଭାବରେ ଅନୁରୋଧ ଜଣାଇଥିଲେ । ଆଜି ତାଙ୍କର ଏ ଦାରୁଣ ବିୟୋଗରେ ଓଡ଼ିଶାର ଯେଉଁ ଘୋର କ୍ଷତି ଘଟିଲା, ତାହା ସହଜେ ପୂରଣ ହେଲାପରି ଦିଶୁନାହିଁ । ଆମ୍ଭେମାନେ ତାଙ୍କର ଶୋକ-ସନ୍ତପ୍ତ ପରିବାରବର୍ଗଙ୍କୁ ଏ ଦୁଃସମୟରେ ଆନ୍ତରିକ ସହାନୁଭୂତି ଓ ସମବେଦନା ଜଣାଇବା ସଙ୍ଗେ ସଙ୍ଗେ ସ୍ୱର୍ଗୀୟ ଆତ୍ମାର ଚିର ଶାନ୍ତି ଓ ସଦ୍‌ଗତି କାମନା କରୁଛୁ ।

( ସମାଜ—ଜୁନ୧—୧୯୪୪ )

## ପରଲୋକେ ଶ୍ରୀଯୁକ୍ତ ବ୍ରଜସୁନ୍ଦର ଦାସ

ଗତକାଲି ଶ୍ରୀଯୁକ୍ତ ବ୍ରଜସୁନ୍ଦର ଦାସଙ୍କର ପରଲୋକ ହୋଇ ଯାଇଥିବା ଫଳରେ ଦାରୁଣ ଶୋକ ଓଡ଼ିଶାରେ ଘୋଟି ଯାଇଛି । ବ୍ରଜ ବାବୁଙ୍କ—ଭଳି ନେତା, ସାହିତ୍ୟ-ସେବୀ, ସଚ୍ଚରିତ୍ର ଓଡ଼ିଶାରେ ବିରଳ କହିଲେ ଅତ୍ୟୁକ୍ତି ହେବନାହିଁ । ଆଜୀବନ ସେ ଉତ୍କଳ ଜନନୀଙ୍କର ସେବା କରି ଯାଇଛନ୍ତି । ସେଥିପାଇଁ ଯଥେଷ୍ଟ କଷ୍ଟ ଓ ତ୍ୟାଗ ସେ ସ୍ୱୀକାର କରିଛନ୍ତି । ପୃଥକ ପ୍ରଦେଶ ପାଇଁ ତାହାଙ୍କର ନିଷ୍ଠାପର ଆନ୍ଦୋଳନ ଓଡ଼ିଆ ମାନେ ପାସୋରି ପାରିବେ ନାହିଁ । ତାଙ୍କସ୍ଥାନ ଆଉ ସହଜରେ ଓ ନିକଟରେ ପୂରଣ ହେବା ଆଶା ନାହିଁ । ବର୍ତ୍ତମାନ ସୁଦ୍ଧା ଓଡ଼ିଆଙ୍କର ସମୂହ କଲ୍ୟାଣ ଓ ଉନ୍ନତି ଦିଗରେ ସେ ଅକ୍ଲାନ୍ତ ପରିଶ୍ରମ କରୁଥିଲେ । ଉପଯୁକ୍ତଭାବେ ତାହାଙ୍କର ଆଦର୍ଶ ପୂଜା ହେବା ଦରକାର ।

(ଓଡ଼ିଆ—ବ୍ରହ୍ମପୁର ଜୁନ ୧୦—୧୯୪୪—ସଂପାଦକ=ଆନନ୍ଦ ଆଗୃଷି)

## ବାବୁ ବ୍ରଜସୁନ୍ଦର ଦାସ ଆଉ ଇହଧାମରେ ନାହାନ୍ତି:

ଜମିଦାର, 'ମୁକୁର' ସମ୍ପାଦକ, ଉତ୍କଳ ଦେଶ ମିଶ୍ରଣ ଆନ୍ଦୋଳନର ଅନ୍ୟତମ ନେତା, କାଳୀପଦ୍ମ ପୁଣି ସାମ୍ନଦ୍ଧ୍ୟର ସଙ୍ଗୀତ ପ୍ରଣୟର ଅଫିସର ଶ୍ରୀ ବ୍ରଜସୁନ୍ଦର ଦାସ ବି. ଏ. ମହୋଦୟଙ୍କର ତାଙ୍କ କଟକ ବାସ-ଭବନରେ ଆଜ ସକାଳେ ହଠାତ୍ ଶ୍ୱାସ ବେଗରେ ମୃତ୍ୟୁ ହୋଇଅଛି । ଓଡ଼ିଶାର ପ୍ରାଦେଶିକ ବ୍ୟବସ୍ଥା ପରିଷଦର ଜନ୍ମ ଦିବସରୁ ତାଙ୍କ ମୃତ୍ୟୁ ପର୍ଯ୍ୟନ୍ତ ସେ ପରିଷଦ ସଭ୍ୟ ଥିଲେ । ତାଙ୍କ ବିୟୋଗରେ ଓଡ଼ିଶାର ଗୋପବନ୍ଧୁ ଓ ମଧୁବାବୁ ଯୁଗର ଜଣେ ନେତାଙ୍କ କର୍ମମୟ ଜୀବନର ଅବସାନ ହେଲା । X X X

ତାଙ୍କ ମୃତ୍ୟୁରେ ଓଡ଼ିଶାର ଜମିଦାରମାନେ ଜଣେ ପ୍ରବୀଣ ନେତାଙ୍କୁ ହରେଇଛନ୍ତି; ସାହିତ୍ୟିକମାନେ ଜଣେ ସାହିତ୍ୟ ରଥୀଙ୍କୁ ହରେଇଛନ୍ତି; ପତ୍ରିକା ସମ୍ପାଦକମାନେ ଜଣେ କୃତୀ ସମ୍ପାଦକଙ୍କୁ ହରେଇଛନ୍ତି; ବ୍ୟବସ୍ଥା ପରିଷଦର ସଭ୍ୟମାନେ ଜଣେ ବିଜ୍ଞ ବ୍ୟବସ୍ଥାପକଙ୍କୁ ହରେଇଛନ୍ତି; ମଧୁସୂଦନ ଦାସ, ଗୋପବନ୍ଧୁ ଦାସ ଓ ନରସିଂହ ଦାସଙ୍କ ବିଚ୍ଛିନ୍ନ ଉତ୍କଳର ନରନାରୀ ଜଣେ ସୁଦକ୍ଷ ଦେଶ ମିଶ୍ରଣ-ଆନ୍ଦୋଳନ ନେତାଙ୍କୁ ହରେଇଅଛନ୍ତି । ବ୍ରଜସୁନ୍ଦର ଦାସଙ୍କ ମୃତ୍ୟୁରେ ଉତ୍କଳ ଜନନୀ କୋଳରୁ ଜଣେ 'ସୁନ୍ଦର' ସହାସ୍ୟ, ଲୋକପ୍ରିୟ ଓଡ଼ିଆ ସନ୍ତାନର ତିରୋଧାନ ହୋଇଅଛି । ତାଙ୍କ ବିୟୋଗରେ "ଦୈନିକ ଆଶା" ମ୍ରିୟମାଣ ବୋଧ କରୁଛି ଏବଂ ତାଙ୍କ ବିଚ୍ଛେଦ ବିଧୁର ପରିବାରକୁ ସମବେଦନା ଜ୍ଞାପନ କରୁଅଛି ।

ଦୈନିକ ଆଶା
୧୯୩୪ ଜୁନ ୧୦ ତାରିଖ ଶନିବାର
ସମ୍ପାଦକ—ମହେନ୍ଦ୍ର ପଟ୍ଟନାୟକ

## ଓଡ଼ିଆ ଲୋକ-ସଙ୍ଘର ଶୋକ ସନ୍ତର୍ପଣ:—

କଟକ, ୧୨।୬

ଓଡ଼ିଆ ଲୋକସଙ୍ଘ (Oriya people's Association) କାଲି ତା'ର ଏକ ବୈଠକରେ ଶ୍ରୀଯୁକ୍ତ ବ୍ରଜସୁନ୍ଦର ଦାସଙ୍କ ବିୟୋଗରେ ଖେଦ ପ୍ରକାଶ କରି ଏହି ପ୍ରସ୍ତାବ ଗ୍ରହଣ କରିଛି—

ଯେଉଁ ବ୍ରଜସୁନ୍ଦର ଦାସ କୋଡ଼ିଏ ବର୍ଷ କାଳ ଏହି ସଙ୍ଘର ସମ୍ପାଦକ ଥିଲେ, ନୂତନ ଓଡ଼ିଶା ପ୍ରଦେଶ ଗଠନରେ ଯାହାଙ୍କ ଶ୍ରମ ଓ ସାଧନା ଅଦ୍ୱିତୀୟ, ଏବଂ ଓଡ଼ିଆର ଗୌରବ, ଓଡ଼ିଆର ଜାତୀୟତ୍ୱ ଅକ୍ଷୁଣ୍ଣ ରଖିବାକୁ ଯେ ନିରତ ପ୍ରାଣପଣ ପ୍ରୟାସ କରୁଥିଲେ ସେହି "ସର୍ବାଙ୍ଗ ସୁନ୍ଦର" ବ୍ରଜସୁନ୍ଦର ଦାସଙ୍କ ଏହି ଅସମୟର ମୃତ୍ୟୁରେ ଓଡ଼ିଶାରେ ଯେଉଁ ଅପୂରଣୀୟ ମହତୀ ବିନଷ୍ଟି ଘଟିଲା, ସେଥିଲାଗି ଏ ସଭା ଗଭୀର ଦୁଃଖ ପ୍ରକାଶ କରୁଅଛି ।

**ଦୈନିକ ଆଶା**
**୧୯୪୪ ଖ୍ରୀଷ୍ଟାବ୍ଦ ଜୁନ ୧୩ ତାରିଖ ମଙ୍ଗଳବାର**

## ବ୍ରଜବାବୁଙ୍କ ବିୟୋଗରେ ଶୋକ ସଭା

କଟକ, ୧୧—୬

୯ ତାରିଖ ସକାଳ ୧୧ଟା ବେଳେ ବାତଶ୍ଳେଷ୍ମା ( ହାଇ ଫିଭର୍ ) ଜ୍ୱରରେ ଶ୍ରୀଯୁକ୍ତ ବ୍ରଜସୁନ୍ଦର ଦାସ ତାଙ୍କ କଟକ ବାସ ଭବନରେ ଇହଲୀଳା ସାଙ୍ଗ କରି ଅଛନ୍ତି । ତାଙ୍କ ଶବକୁ ଶୋଭାଯାତ୍ରାରେ ନେଇ କଟକ ସତୀ-ଚଉରା ଶ୍ମଶାନରେ ଦାହ କରି ଯାଇଛି ।

୧୦ ତାରିଖ ସନ୍ଧ୍ୟାରେ ତାଙ୍କର ଗୁଣ କୀର୍ତ୍ତନ ଓ ସ୍ମୃତି ପୂଜା ଉଦ୍ଦେଶ୍ୟରେ କଟକ ଟାଉନହଲରେ ମାନ୍ୟବର ଅର୍ଥମନ୍ତ୍ରୀ ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ ସଭାପତିତ୍ୱରେ କଟକ ସାଧାରଣଙ୍କର ଏକ ସଭା ହୋଇଥିଲା । ବହୁ ମାନ୍ୟଗଣ୍ୟ ଭଦ୍ରଲୋକ ସମବେତ ହୋଇଥିଲେ ।

ରାୟବାହାଦୁର ଲକ୍ଷ୍ମୀଧରଣ ପଟ୍ଟନାୟକ, ଶ୍ରୀ ଯଦୁମଣି ମଙ୍ଗରାଜ, ଶ୍ରୀ ବିଚ୍ଛନ୍ଦ ଚରଣ ପଟ୍ଟନାୟକ, ଶ୍ରୀ ନବକିଶୋର ଦାସ ପ୍ରମୁଖ ବକ୍ତାମାନେ ସ୍ୱର୍ଗୀୟ ବ୍ରଜସୁନ୍ଦର ବାବୁଙ୍କର ବହୁ ପ୍ରତିଭା, ଦେଶ ମାତୃକାବୋଧ, ଲୋକୈଷଣା, ସାହିତ୍ୟ ସାଧନା ଓ ସଙ୍ଗୀତ ଚର୍ଚ୍ଚା ଆଦି ବହୁ ବିଷୟରେ ଆଲୋଚନା କରିଥିଲେ । ବ୍ରଜବାବୁଙ୍କ ବିଚ୍ଛେଦ ବିଧୁର ପରିବାରକୁ ସମବେଦନା ଜ୍ଞାପନ ଓ ତାଙ୍କ ସ୍ମୃତିରକ୍ଷା ନିମନ୍ତେ ଏକ କମିଟୀ ଗଠନ ନେଇ ଦୁଇଟି ପ୍ରସ୍ତାବ ସଭାପତି ନିଜେ ଆଗତ କରିଥିଲେ । ପ୍ରସ୍ତାବ ସର୍ବସମ୍ମତିକ୍ରମେ ଗୃହୀତ ହୋଇଥିଲା ।

ସମ୍ପାଦକ ମହୋଦୟ ସ୍ୱର୍ଗୀୟ ବ୍ରଜସୁନ୍ଦର ବାବୁଙ୍କ ସହିତ ତାଙ୍କର ଆତ୍ମୀୟତାର ଅନୁଭୂତ ଓ ତାଙ୍କ ଜୀବନରେ ବ୍ରଜବାବୁଙ୍କର ଆଦର୍ଶ ନେଇ ଯେଉଁ ଭାଷଣ ଦେଇଥିଲେ, ତଦ୍ୱାରା ଶ୍ରୋତାମାନଙ୍କ ହୃଦୟ ତରଳି ଯାଇଥିଲା ଏବଂ ତ୍ୟାଗୀ, ଦେଶପ୍ରାଣ, ସହୃଦୟ ବରପୁତ୍ର ବ୍ରଜସୁନ୍ଦର ଦାସଙ୍କର ଗୋଟିଏ ଅପୂର୍ବ ସୁନ୍ଦର ଅମର ରୂପ ଫୁଟି ଉଠିଥିଲା ।

"ଦୈନିକ ଆଶା"

୧୯୪୫ ଜୁନ ୧୩ ତାରିଖ

*

Sri Braja Sundar Das

We deeply regret to announce the death of Sri Brajasundar Das, M.L.A, which sad event took place at his residence this morning. Brajasundar Babu was reported ailing from his chronic asthma for some days past; but we never imagined that his end was so near. Sri Das was one of the few remaining stalwarts amidst us, who spent for the best part of their lives for bringing about the amalgamation of all Oriya speaking tracts under one administration. He lived to see the fruition of his labours Utkal Union conference. A great parliamentarian, who made his mark in the Bihar and Orissa Council, he was an elected member of the Orissa Assembly ever since its inception and took a prominent part in measures relating to the amelioration of the condition of tenants in North Orissa. Gifted with the saving grace of humour and endowed with wide culture, charming manners and cheerful disposition,

Sri Das was a popular figure in Orissa and his death will be mourned dy the many friends and admirers whom he has left behind him. We offer our sincere condol·ences to Mrs. Das and to his sons and daughters in the irreparable loss they have sustained.

(New Orissa—Cuttack—10. June 1944—
Editor—K. N. Acharya)

*

Cuttack Citizens' Condolence

A largely attended public meeting was held last evening at the Town Hall to express the Cuttack citizens' sorrow at the passing away of Sri Brajsundar Das, M. L. A on friday morning, the Hon'ble pandit Godavaris misra, Education and Finance Minister presided. Prominent among those present were Mr, L. P. Singh, I. C. S. Mr. S. C. Tripathi, Rai Bahadur Bhikari Charan Patnaik, and Artha Ballav Mohanty, Rai Sahibs Durga Charan Das and Manbodh Panda, Mr. Motilal Pandit, Hon'ble Nikunja Kishore Das, Prof. B. C. Das, Messers, D. S. Das, S. C. Dash Bairagi Charan Tripathi, Nabakishore Das, H.Bhole, Jagadananda Patnaik, Kanhu Charan Patnaik, K. N. Acharya, Bichhand Ch. Patnaik, Lalmohan Patnaik, Jadumani Mangaraj, G. Dhal, and R. C. Dash,

A Song specially composed for the occasion by Mr. Naba Kishore Das with the opening words "Heroes do not die but live for ever." Was sung at the beginning of the meeting by Mrs. Mandakini Das.

Rai Bahadur Bhikari Charan Patnaik, Mr. Jadumani Mangaraj, Mr. Nabakishore Das, Mr. Bichhanda Charan

Patnaik, Mr. Bairagi Charan Tripathy and a student admirer, Mr. Nityananda Das spoke eloquently of the great services rendered by the departed leaders to the unification of the Oriya nation and the irreparable loss sustained by the Province in his death. Condolence letters from Pandit Nilakantha Das and Mr. B. Das associating themselves with the objects of the meeting and regretting their inability to attend, were read at the meeting. A resolution expressing sorrow at the demise of Brajasundar Babu and conveying the citizens' condolences to the bereaved family was put from the Chair and passed, the audience standing in silent Prayer.

By another resolution, also moved by the chair, it was decided to perpetuate the memory of Brajasundar babu and a representative and influential Committee with Hon'ble Pandit Godavaris Misra as Chairman and Mr. Nabakishore Das as Convener was Constituted. Among the members are Rai Bahadurs, B. C. Patnaik, C. M. Acharyya and B. V. Roy, Mr. L. P. Singh, Rai Sahib D. C. Das, Mr. J. M. Mangaraj, Mr. Motilal pandit, Mr. Ranglal Modi, Mr. M. S. Mohanty, Rao Sahib, A. C. Row. Swami B. N. Das, Tikayet of Kanika, Hon'ble Mr. A. S. Khan and Rev B. Mohanty.

The chairman in his Concluding speech, spoke feelingly and said that the late Mr Brajasundar Das was his philosopher, friend, guide over since the speaker attained the age of discretion. They were like two brothers, now his elder brother had died leaving his desolate, They would never see his like again. He was nobody's enemy and every body's

friend. His uprightness of character was remarkable, his loyalty was unwavering, his cheerfulness amidst adversities was unquenchable and his simplicity was endearing to all. They were mourning that day the loss of a gr at gentleman. As the saying went, the best memorial of man was man and it would be in the fitness of things, if they would produce men like him.

At a meeting of the staff and students of the Lakshmikanta Sangit Vidylaya held last evening, a resolution was passed expressing sorrow at the death of Mr. Brajasundar Das, who as President of the Utkal Sangit Samaj, had laid lovers of Oriya music and culture under a deep debt of gratitude by his devoted services.

The Orissa Athletic Association met last evening to express their Condolences at the demise of Brajasundar Babu.

At a special meeting of the Ruy Lopez Club held this evening, the following resolution was passed all members standing—

"This meeting of the Ruy Lopez Club, Cuttack, records its deep sorrow and mourning at the sudden death of Sri. Brajasundar Das, M. L. A. in whom Utkal has lost one of the finest gentlemen, noblest of souls and foremost of her citizens and the club, one of its greatest benefactors. This meeting also records its sincere sympathy with the family of the departed soul in their sad bereavement" × × ×

(New Orissa—Cuttack 13—1944)



Mr. B. S. Das no more

Cuttack June 9—Cuttack is widely mourning today the sad passing away of Mr. Brajasundar Das M. L. A., one of the most leading men of Orrissa, which melancholy event took place at his residence here this morning at 10-30. He was suffering from asthma and was about 65 at the time of his death.

One of the oldest legislators of Orissa, Mr. Das was for many years a member of the old Imperial Legislative Assembly and also in the Bihar and Orissa Council and was one of the foremost leaders of the Utkal Union Conforence, who actively brought about the creation of the new province of Orissa. He lived to see the fruition of the labours of the Conference, but his valuable life of great services to the uplift of the province has been unfortunately cut short.

Since the inception of the province Mr. Das was an elected member of the Orissa Assembly from Landholders constituency and played a prominent part in the amelioration of the conditions of the tenant in the North Orrissa. He belonged to the party of the Maharaja of Paralakemedi(Premier) in the Assembly. The deceased was a keen lover of Oriya Literature and in the recent years, was also incharge of the Song publicity of N. W. F. of the Government.

Quite a familiar figure in all the progressive activities of the province, unostentious in life, of wide cultnre, cheerful disposition and charming manners. Brajasunder Babu's demise hrs really cast a shadow over the social public life of Orissa.

The Amrit Bazar Patrica June 13—1944.



Late Mr. Brajasunder Das,

It is learnt that the Oriya Peoples' Association adopted a resolution deeply mourning the loss of the province and the oriya people as a whole has suffered at the sad death of Mr. Brajasundar Das who had been a President of the association for long, 20 years and his inestimable services in the formation of the separate province.

Amrit Bazar Patrica June 12 -1944.



Mr. Brajasundar Das Dead

The death occured of Mr. Brajasundar Das M.L.A., yesterday at the age of 65. Mr. Das was a member of the Central Assembly and the Bihar Council. A prominent figure in Orissa politics, Mr. Das played an important part in the movement for a separate province.

The Hindusthan Standard, June 11—1944.



Mr. Brajasundar Das Dead.

The death occured this morning of Mr. Brajasundar Das (65) a prominent member of the Orissa Assembly.

Mr. Das represented Orissa in the Central Assembly and later in the Bihar and Orissa Legislatives Council – (A.P.I.)

(The Statesman Calcutta, June 12—1944.)



## ଶୋକୋଚ୍ଛ୍ୱାସ

ବ୍ରଜସୁନ୍ଦରଙ୍କ ତିରୋଧାନରେ ବ୍ୟଥିତ ହୋଇ ଭାରତର ବହୁ ବରିଷ୍ଠ ବ୍ୟକ୍ତି, ଓଡ଼ିଶାର ତତ୍କାଳୀନ ଗଭର୍ଣ୍ଣର, ବରିଷ୍ଠ ବ୍ୟକ୍ତି, ସାହିତ୍ୟିକ, ରାଜନୀତିଜ୍ଞ ଓ ରାଜା ମହାରାଜାଙ୍କଠାରୁ ଆରମ୍ଭକରି ଆତ୍ମୀୟ ସ୍ୱଜନ ବନ୍ଧୁ ସହକର୍ମୀଙ୍କ ପର୍ଯ୍ୟନ୍ତ ବହୁ ବ୍ୟକ୍ତି ବ୍ୟକ୍ତିଗତ ଭାବେ ବ୍ରଜସୁନ୍ଦରଙ୍କ ପରିବାର-ବର୍ଗଙ୍କୁ ପତ୍ର ଲେଖିଥିଲେ । ସେହିସବୁ ପତ୍ରଗୁଡ଼ିକରୁ ମଧ୍ୟ ବ୍ରଜସୁନ୍ଦରଙ୍କ ବରିଷ୍ଠ ବ୍ୟକ୍ତିତ୍ୱ ଓ ଗୁଣଗ୍ରାହିକ ମହନୀୟତାର ନିଦର୍ଶନ ମିଳିଥାଏ । ଏଣୁ ସେହିସବୁ ସଂଗୃହିତ ପତ୍ରମାନଙ୍କ ମଧ୍ୟରୁ କେତେକ ଏଠାରେ ସଂଯୋଜିତ ହେଲା । ଏଗୁଡ଼ିକ ବ୍ୟକ୍ତିଗତ ପତ୍ର ହେଲେହେଁ, ଏହାର ଗୁରୁତ୍ୱ ଅନସ୍ୱୀକାର୍ଯ୍ୟ ।

ସଂପାଦକ

ଆଜି କାଗଜରେ ଏ ଶୋକାବହ ସମ୍ବାଦ ଶୁଣି ହୃଦୟ ଭାଙ୍ଗି ପଡ଼ିଲା । ଓଡ଼ିଶାରେ ତାଙ୍କ ସ୍ଥାନ ପୂରଣ କରିବାକୁ କେହି ନାହାନ୍ତି । ମଧୁବାବୁଙ୍କ ଦୁଇଟି ପ୍ରିୟଶିଷ୍ୟ ଗୋପବନ୍ଧୁ ଓ ବ୍ରଜସୁନ୍ଦର ଆଜି ତାଙ୍କର ଗୁରୁଙ୍କ ନିକଟରୁ ମହା ପ୍ରୟାଣ କଲେଣି ! ଉତ୍କଳ-ସମ୍ମିଳନୀ ସହିତ ବ୍ରଜସୁନ୍ଦର ବାବୁଙ୍କ ସ୍ମୃତି ଜଡ଼ିତ । ଦେଶ ମିଶ୍ରଣ ପ୍ରଚେଷ୍ଟାରେ ସେ ଜଣେ ପ୍ରଧାନ ଉଦ୍ୟୋକ୍ତା ଥିଲେ । ସେ ଆଜି ନାହାନ୍ତି, ଏହା ମୁଁ ବିଶ୍ୱାସ କରିପାରୁନାହିଁ ।

× × × × ବ୍ରଜବାବୁଙ୍କ କଥା ଭାବି ମୁଁ ଆଜି ଅଧୀର ହେଉଛି । କେତେବର୍ଷହେଲା କଂଗ୍ରେସ ଦଳକୁ ଟାଣି ହୋଇ-ଯାଇ ତାଙ୍କ ସାହଚର୍ଯ୍ୟରୁ ଦୂରରେ ରହିଥିଲି । ସେ ଯେ ମୋର ସ୍ନେହର ବଡଭାଇ । ସେ ଯେ ମୋତେ ସ୍ନେହ କରୁଥିଲେ, ତାହାର ତୁଳନା ନାହିଁ ।

ସ୍ୱାମୀ ବିଚିତ୍ରାନନ୍ଦ ଦାସ, ସମ୍ବଲ ପୁର୍ ୧୨—୭—୪୪

*

ବ୍ରଜସୁନ୍ଦରଙ୍କ ଅକାଳ ବିୟୋଗ ବାର୍ତ୍ତା "ସମାଜ" ସମ୍ବାଦପତ୍ରରୁ ପାଠକରି ମର୍ମାହତ ହେଲି । ମୁଁ ତାଙ୍କୁ ପିତୃତୁଲ୍ୟ ମନେ କରୁଥିଲି । × × × ଉତ୍କଳ-ବଙ୍ଗ ଦାଣ୍ଡରେ ଆଉ ବ୍ରଜସୁନ୍ଦରଙ୍କ ଭଳି କାହାରିକୁ ଦେଖୁନାହିଁ—ଆଜି ତାହା ଶୂନ୍ୟ । ସାହିତ୍ୟ କ୍ଷେତ୍ରରେ ବ୍ରଜ-ସୁନ୍ଦର କେତେବଡ଼ ସ୍ୱର୍ଣ୍ଣମଣି ଥିଲେ,ତାହାଯେ ଅନୁଭବ କରିଛି ସେ ଜାଣେ । + + + ପୁଣ୍ୟାତ୍ମାଙ୍କ ସ୍ମୃତିରେ ଆଜି ମୁଁ ଅଶ୍ରୁ ତର୍ପଣ କରୁଛି ।

ଶ୍ରୀ ଉପେନ୍ଦ୍ର ପ୍ରସାଦ ମହାନ୍ତି
ବାଣୀ ସାହିତ୍ୟ ମନ୍ଦିର—ଭଦ୍ରକ
ତା ୧୫-୭-୪୪

ବ୍ରହ୍ମପୁର ଜେଲ
୧୨ । ୭ । ୪୨

ଆୟୁଷ୍ମାନ ସତ୍ୟ ସୁନ୍ଦର

ବ୍ରଜବାବୁଙ୍କ ବିୟୋଗ କେବଳ ତାଙ୍କ ପରିବାରର ନୁହେଁ, ସମଗ୍ର ଦେଶର କ୍ଷତି । ବିଶେଷରେ ତାଙ୍କର ସ୍ନେହ, ଶ୍ରଦ୍ଧା ମୁଁ ବ୍ୟକ୍ତିଗତ ଭାବରେ ଯେପରି ଅନୁଭବ କରିଛି, ସେପରି ମୁଁ ଅନ୍ୟ କୁତ୍ରାପି ପାଇ ନଥିଲି । ତାଙ୍କର ସରସ, ମଧୁର, ଉଦାର ଓ ଉଚ୍ଚମନ ଓ ହୃଦୟ କ୍ୱଚିତ୍ ଦେଖା ଯାଇଥାଏ । ମୁଁ ତାଙ୍କୁ ପିତୃତୁଲ୍ୟ ଭକ୍ତି କରୁଥିଲି । ତାଙ୍କ ସଙ୍ଗେ ସମୟ କଟାଇବା ସୁବିଧା ପାଇଲେ ନିଜକୁ କୃତାର୍ଥ ମଣୁଥିଲି । ସେ ଉତ୍କଳ ଜାତୀୟ ଜୀବନରେ ଗୋଟିଏ ମେରୁସ୍ତମ୍ଭ ଥିଲେ ।

ଶ୍ରୀ ରାଧାନାଥ ରଥ



ଅନଗୁଳ
୧୦।୭।୧୯୪୪

ଉତ୍କଳର ଯୋଗ୍ୟପୁତ୍ର ବ୍ରଜସୁନ୍ଦର ବାବୁଙ୍କର ପରଲୋକଗମନ ଆମ୍ଭ ଦେଶ ଓ ଜାତି ପକ୍ଷରେ ଏକ ଦୁରପନେୟ କ୍ଷତି । ଏ ସମ୍ବାଦ ଆଜି ମୋର ପ୍ରାଣରେ ଗଭୀର ଶୋକର ଉଚ୍ଛ୍ୱାସ ଖେଳାଇ ଦେଉଛି ।

ରାଧାମୋହନ ଗଡ଼ନାୟକ



କଟକ ଜେଲ
୧୧-୭-୪୪

ପ୍ରିୟ-ବାମାଚରଣ ବାବୁ,

ବ୍ରଜବାବୁଙ୍କ ମୃତ୍ୟୁଖବର "ସମାଜ"ରୁ ପାଇଲି । ସାଧାରଣକ୍ଷେତ୍ରରେ କାର୍ଯ୍ୟକରି ତାଙ୍କ ସହିତ ପରିଚୟ । ରାଜନୈତିକ ମତଭେଦ ସତ୍ତ୍ୱେ ବ୍ରଜବାବୁଙ୍କ ପ୍ରତି ମୋର ପ୍ରଗାଢ଼ ଭକ୍ତି ଥିଲା ଏବଂ ତାଙ୍କର କେତୋଟି ଗୁଣ ମୋତେ ଆକୃଷ୍ଟ କରିଥିଲା । ଯୁବକମାନଙ୍କ ପ୍ରତି ସେ ବିଶେଷ ସ୍ନେହ

ଦେଖାଉଥିଲେ ଏବଂ ଆମ୍ଭମାନଙ୍କର କର୍ମଜୀବନର ସାଫଲ୍ୟ କାମନା ବରାବର କରୁଥିଲେ । ମୋର ମନେହୁଏ, ବ୍ରଜବାବୁଙ୍କ ସମସାମୟିକ ଓଡ଼ିଶା ନେତାଙ୍କ ଭିତରେ ଏ ଗୁଣରେ ସେ ବୋଧହୁଏ ଅଦ୍ୱିତୀୟ । ସବୁବେଳେ ଓଡ଼ିଶାର ଉନ୍ନତିହିଁ ତାଙ୍କର ଚିନ୍ତା ଥିଲା ଏବଂ କୌଣସି କ୍ଷେତ୍ରରେ କେହି ଓଡ଼ିଆ କୃତିତ୍ୱ ଲାଭକଲେ, ସେ ତାହା ନିଜର ଗୌରବ ବୋଲି ବିଚାରୁଥିଲେ । ଓଡ଼ିଆ ଯୁବକ ଏକ ପ୍ରଧାନ ଉତ୍ସାହଦାତା ହରାଇଲା । ଏହିକଥା ଭାବି ମୁଁ ଏ ଚିଠିଟି ଆପଣଙ୍କ ପାଖକୁ ଲେଖିଲି । କାରଣ ନିଜର ଦୁଃଖକୁ ସମଦୁଃଖୀ ଆଗରେ ଜଣାଇଲେ ତାହା କିଞ୍ଚିତ ଲଘବ ହୁଏ । ଏ କ୍ଷତି ଆପଣମାନଙ୍କର ନୁହେଁ, ଆମ ସମସ୍ତଙ୍କର ।

ଆପଣଙ୍କର
ସୁରେନ୍ଦ୍ର ନାଥ ଦ୍ୱିବେଦୀ



ବିୟୋଗ ବାର୍ତ୍ତାପାଇ ବଡ଼ ମର୍ମାହତ ହେଲି । ଭଗବାନ ସ୍ୱର୍ଗତଃ ଆତ୍ମାର ସଦ୍‌ଗତି କରନ୍ତୁ ।

ରାଜାସାହେବ,
ରାଜଭବନ—ନରସିଂହପୁର । ୧୪-୭-୪୪

ବ୍ରଜସୁନ୍ଦର ଆଜ ଇହଧାମରେ ନାହାନ୍ତି, ଶୁଣି ଅତିଶୟ ଦୁଃଖିତ ହେଲି । ବ୍ରଜସୁନ୍ଦରବାବୁ ବନ୍ଧୁ ଭାବରେ, ସାହିତ୍ୟିକ ଭାବରେ ଓ ଦେଶର କର୍ମୀ ଭାବରେ ମୋର ସୁପରିଚିତ ।

ରାଜାବାହାଦୁର, ତାଳଚେର
ତା ୧୩-୭-୪୦



ଯେ କି ମୋର ବାଲ୍ୟକାଳରୁ ବିଶେଷ ଆତ୍ମୀୟ ବନ୍ଧୁ ଥିଲେ ତାହାଙ୍କର, ହଠାତ୍ ପରଲୋକ ହେବା ଶୁଣି ମୁଁ ମର୍ମାନ୍ତିକ ବ୍ୟଥିତ

ହେଲ । ତାହାଙ୍କର ବିୟୋଗରେ ଓଡ଼ିଶାର ବିଶେଷ କ୍ଷତି ହୋଇଅଛି, ଓ ମୋର ନିଜର କ୍ଷତି ବୋଲି ମନେକରେଁ ।

ଶ୍ରୀ ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ

✳

ବ୍ରଜସୁନ୍ଦରବାବୁଙ୍କ ବିୟୋଗରେ ଆଜି ସମଗ୍ର ଓଡ଼ିଶା ଅଭାବ ଅନୁଭବ କରିବ । ତାଙ୍କପରି ପୁଅ ଆଉ ଓଡ଼ିଶା କୋଳରେ ଜନ୍ମହେବ ନାହିଁ । ଆଜି ଦେଶପାଇଁ ସେ ଯାହା କରିଯାଇ ଅଛନ୍ତି, ତାହା ଚିର ସ୍ମରଣୀୟ । ଦିନରାତି ସେ ଦେଶପାଇଁ ଲାଗିଥିଲେ । ସେ ଜମିଦାରମାନଙ୍କ ପ୍ରଧାନ ପୃଷ୍ଠପୋଷକ ଥିଲେ ଓ ପ୍ରଧାନ ପଥ-ପ୍ରଦର୍ଶକ ଥିଲେ ।

ରାଜାସାହେବ ପଚ୍ଛିକୋଟ
୧୫-୭-୪୪

✳

ଓଡ଼ିଶା ଜଣେ ମହତ ଲୋକ ହରାଇଲା ଓ ଆମ୍ଭେମାନେ ଗୋଟିଏ ଆମ୍ଭ ଦଳର ବିଶେଷ ଲୋକ ହରାଇଲୁ, ତାଙ୍କର ସ୍ଥାନ ଆଉ ବର୍ତ୍ତମାନ ଓଡ଼ିଶାରେ ପୂରଣ ହେବନାହିଁ । ଯେତେବେଳେ କିଛି ପରାମର୍ଶ ଦରକାର ସେତେବେଳେ ଆମ୍ଭେମାନେ ତାଙ୍କର ପରାମର୍ଶ ଗ୍ରହଣ କରୁଥାଉ । ବିଶେଷତଃ ଓଡ଼ିଶା ଜମିଦାରମାନଙ୍କର ଗୋଟିଏ ମୁଖପାତ୍ର ସେ ଥିଲେ । ଆଉମଧ୍ୟ ସବୁ ସାଧାରଣ କାର୍ଯ୍ୟରେ ସବୁସମୟରେ ତାଙ୍କୁ ଲୋକେ ଲୋଡ଼ୁଥିଲେ । ସେ ମଧ୍ୟ ବିନା ଆପତ୍ତିରେ ଯୋଗ ଦେଉଥିଲେ । ତେବେ ସମସ୍ତ ଲୋକର ଅଛି, ବର୍ତ୍ତମାନ ପରିସ୍ଥିତିରେ ତାଙ୍କର ବିୟୋଗ ଓଡ଼ିଶାର ଗୁରୁତର କ୍ଷତିହେଲା ।

ରାଜାସାହେବ ମଧୁପୁର
୧୩-୭-୪୪

✳

ମାନନୀୟାସୁ !

'ନବ ଭାରତ'-ପତ୍ର ଦୁଃସହ ସଂବାଦ ବହନ କରି ଆସି ବାଲୁଚିସ୍ଥା-ସ୍ଥଳରେ ଆମ୍ଭମାନଙ୍କୁ ଭେଟିବାରେ ତାହା ପାଠକରି ଜାଣିଲୁଁ, ଓଡ଼ିଶାର

ଅଦ୍ୟ ଗୋଟିଏ ନକ୍ଷତ୍ର ପତନ ହୋଇ ଯାଇଅଛି । ସାମାନ୍ୟ ୬୩ବର୍ଷ ବୟସରେ ଜାତିପ୍ରେମୀ ଜମିଦାର, ମୁକୁର ସମ୍ପାଦକ, ଆଦର୍ଶ ସାହିତ୍ୟିକ, ଜାତୀୟ ସାହିତ୍ୟର ପ୍ରଧାନତମ ଉତ୍ସାହଦାତା ଆପଣଙ୍କ ଆଦର୍ଶ ସ୍ୱାମୀ-ବାବୁ ବ୍ରଜସୁନ୍ଦର ଦାସ ବି. ଏ. ମହୋଦୟ ୫କନ୍ୟା ଏବଂ ୨ପୁତ୍ର ସହ ଆପଣଙ୍କୁ ଶୋକସାଗରରେ ଭସାଇ ଅମର ଧାମକୁ ଚାଲିଯାଇଛନ୍ତି । ସେ ଥିଲେ—

"ଦୀନାର୍ତ୍ତାନାଂ ପରମ ଶରଣଂ ଧୀରଧୀ ସାଧୁ ସେବୀ,
ଶିଷ୍ଟଃ ଶାନ୍ତୋ ବିନୟବିନତଃ ସତ୍ୟନିଷ୍ଠୋ ଦୟାଳୁଃ"
ବିଦ୍ୟାଦାନେ ବସ୍ତ୍ରବିତରଣେ ସର୍ବଦା ମୁକ୍ତହସ୍ତୋ;

ଏହିପରି ମହାତ୍ମା ଦେଶପ୍ରେମୀ ଓ ଜାତିବ୍ରତୀ ସେ, ଇହଲୋକର କର୍ମ ଶେଷ କରି କାଳର କଠୋର ଶାସନରେ ପଡ଼ିଶ ଓ ଜାତିକୁ କନ୍ଦାଇ

"ଗଙ୍ଗାଗର୍ଭେ ବିମଳ ସଲିଳେ ନିତ୍ୟଦେହଂ ବହ୍ନୌସଃ"
"କେହି ରହିନାହିଁ ରହିବ ନାହିଁଟି ଭବରଙ୍ଗ ଭୂମିତଳେ,
ସବେ ନିଜ ନିଜ ଅଭିନୟ ସାରି ବାହୁଡ଼ିବେ କାଳବଳେ
ଭବିତବ୍ୟ ଯାହା ଅବଶ୍ୟ ଘଟିବ
କିଏ ତା କରିବ ଆନ
କିଏ ଅବା ସେହି ଜ୍ୟୋତିଷ୍କ ଗତି
ରୋଧିବାକୁ ବଳବାନ୍"

ସୁତରାଂ ଯାହାର କୌଣସି ପ୍ରତିବିଧାନ ନାହିଁ, ସେଥିପାଇଁ ଶୋଚନା କରିବା ବୃଥା । ସେ ଉଚ୍ଚକୁଳରେ ଜନ୍ମି ଉଚ୍ଚବଂଶର କନ୍ୟା ବିବାହ କରି ବଂଶ ରକ୍ଷା କରି ଯାଇଛନ୍ତି ।

"କା ପୁରୁଷ ପରି ମରିବା ଜଗତେ
ନୁହେଁ ନର ପଉରୁଷ;
ପର ହିତ ସାଧି ମରେ ଯେଉଁ ନର
ସେହି ଏକା ସୁପୁରୁଷ ।"

ସେ ଥିଲେ ବାସ୍ତବିକ ସୁ ପୁରୁଷ, ଯାହାଙ୍କ ବିୟୋଗ ବେଦନା ଜାତିକୁ ଓ ଦେଶକୁ ବ୍ୟଥିତ କରେ, ସେହିତ ମହାତ୍ମା ବ୍ୟକ୍ତି । ତାଙ୍କ ଜନ୍ମ ସାର୍ଥକ ।

"ମାନବ ଜୀବନ ନୁହଇ କେବଳ
ବର୍ଷ ମାସ ପଳ ଦଣ୍ଡ
କର୍ମେ ଜୀଏ ନର କର୍ମହିଁ ତାହାର
ଜୀବନର ମାନଦଣ୍ଡ"

କର୍ମହୀନ ଜୀବନ ନେଇ ଆତ୍ମଭୋଳ ରହି ସେ ୭୩ ବର୍ଷରେ କାଳକବଳିତ ହେଲେ । ସୁତରାଂ ସେ ଆଦର୍ଶ କର୍ମୀ ଥିଲେ । ମି' ଦାସ, ଉତ୍କଳମଣି ଗୋପବନ୍ଧୁଙ୍କ ପରି ସେ ଜଣେ ତ୍ୟାଗୀ ମହାତ୍ମା, ଏବଂ ବଚ୍ଛିନ୍ନ ଓଡ଼ିଆ ମିଳନ ପାଇଁ ସେ ମଧ୍ୟ ବହୁତ କାମ କରୁଥିଲେ । ୧୯୦୯ ମସିହାରୁ ଆମ୍ଭେ ବଚ୍ଛିନ୍ନ ଅଞ୍ଚଳର ଚନ୍ଦ୍ରି ଓଡ଼ିଆ ପଲ୍ଲୀର କଲ୍ୟାଣ କାମନାରେ ଲଗି ରହୁଛୁ । ପ୍ରଥମେ ମାଇନର ସ୍କୁଲ୍, ଝୋଲି ଭିକ୍ଷାରେ ଗଢ଼ିଛୁଁ । ସ୍କୁଲପାଇଁ ଭିକ୍ଷା କରିବାକୁ କଟକ ୧୯୧୯ ରେ ଯାଇ ଆମ୍ଭେ ବାବୁ ଶଶିଭୂଷଣ ରାୟଙ୍କ ଘରେ ରହି, ପଣ୍ଡିତ ମୃତ୍ୟୁଞ୍ଜୟ ରଥ, ବାଣୀଭୂଷଣ କାବ୍ୟତୀର୍ଥଙ୍କ ସାହଚର୍ଯ୍ୟରେ ବାବୁ ବିଶ୍ୱନାଥ କରଙ୍କ ଉପଦେଶରେ ରାୟ ବାହାଦୁର ସୁଦାମଚରଣ ନାୟକ ଓ ବ୍ରଜସୁନ୍ଦର ବାବୁମାନଙ୍କ ସହିତ ଏବଂ ଆହୁରି ଅନେକଙ୍କ ସହିତ ସାକ୍ଷାତ କରି ଆଶାନୁରୂପ ନଗଦ ସାହାଯ୍ୟ ଏବଂ ଅନେକ ପୁସ୍ତକ ସାହାଯ୍ୟ ନେଇ ଏକମାସରେ ଘରକୁ ଫେରିଥିଲୁଁ । ସେହି ସମୟରେ ବ୍ରଜସୁନ୍ଦରବାବୁଙ୍କ ମଧୁର ବ୍ୟବହାର ଜାତିପ୍ରୀତି ଯେପରି ଉପଭୋଗ କରିଥିଲୁଁ, ଅତି ସୁକୃତଜ୍ଞତାର ସହିତ ସ୍ମରଣ ରଖିଅଛୁ । ଆଜି ତ ସେ ଚାଲିଗଲେ, ତାଙ୍କ ପୁଣ୍ୟସ୍ମୃତି କାଳକାଳକୁ ରହିଥିବ । × × + × ×

ପଣ୍ଡିତ ମୃତ୍ୟୁଞ୍ଜୟ କାବ୍ୟତୀର୍ଥ
ପ୍ରତିଷ୍ଠାତା—ଚନ୍ଦ୍ରଶେଖର ପଲ୍ଲୀ ମଙ୍ଗଳ ପାଠାଗାର
ପୋ:ଚନ୍ଦ୍ରୀ, ଭାୟା ଝାଡ଼ଗ୍ରାମ ଜି: ମେଦିନୀପୁର

*

× × ଭଗବାନ ଏପରି ସରଳ ପ୍ରାଣ ଓ ଜଗତକୁ ଭଲ ପାଇବା ଲୋକଙ୍କୁ ଅକାଳରେ କାହିଁକି ନେଇଗଲେ, ତାହା ସେ ଜାଣନ୍ତି । × × ଈଶ୍ୱରଙ୍କଠାରେ ପ୍ରାର୍ଥନା, ସେ ତାଙ୍କର ଆତ୍ମାକୁ ସଦ୍‌ଗତି ଦିଅନ୍ତୁ × ×

* ଗୋକୁଳଚନ୍ଦ୍ର ଶ୍ରୀଚନ୍ଦନ

× × ତାଙ୍କର ସାଧୁତା ଆମେ ବସ୍ବର ଦେଖି ଆସିଛୁ । ଓଡ଼ିଶାରେ ତାଙ୍କପରି ଲୋକ ବିରଳ । × ×

ଈଶ୍ୱରଲାଲ ବ୍ୟାସ୍

*

ମୋର ନିଜର ମନ ପ୍ରବୋଧ ମାନୁନାହିଁ । + + + ଏକା ଭଗବାନ ଆମ୍ଭମାନଙ୍କୁ ଏ ଦୁଃଖ ସହିବାକୁ ହୃଦୟରେ ବଳ ଦିଅନ୍ତୁ— ଏତିକି ତାଙ୍କ ନିକଟରେ ପ୍ରାର୍ଥନା ।

ରାୟବାହାଦୁର ଲକ୍ଷ୍ମୀଚରଣ ଦାସ, ଏମ୍. ବି. ଇ
ଦେଓ୍ୱାନ, କଳାହାଣ୍ଡି ଷ୍ଟେଟ୍, ଇଷ୍ଟର୍ଣ୍ଣ ଷ୍ଟେଟ୍ ଏଜେନ୍ସି
କ୍ଷେତ୍ରେଶ୍ୱର
ପୁରୀ

*

GOVERNMENT HOUSE,
CUTTACK. June 10th 1944

Dear Mr. Nikunja Kishore Das

I am most grieved to learn of the death of your father in-law Sri Braja Sundar Das. He will be very greatly missed. For so many years he has occupied a leading position in the public life of Orissa and has been universally respected. I greatly valued all my own contacts with him and appreciated his help in the Song Publicity Organization to which he gave so much of his time and thought. Will you please convey my deep sympathy to the members of his family

Yours sincerely

W.H. Lewis

Servants of India Society
Poona 4. (India)
June 19. 1944

Dear Sir,

I am very sorry to learn the death of your father, Babu Brajasunder Das, M L. A. I sincerely sympathise with you in your loss. I had known him for several years. He commanded respect not merely because of his past work, but also because of his sincerity and frankness. I doubt whether he had a single enemy.

Yours Sincerely,
H. N. Kunjur



Vice-Chancellor

Camp – Ranchi
Patna University
Patna, the 14th June 1944

My Dear Prof. Das,

I have been profoundly grieved and deeply distressed to read in the papers the sad and sorrowful news of the passing away of your father-in-law, who was one of my oldest friends. As when I saw him last, some months back, he seemed to be in perfect health and spirits. As you are aware, he and I had worked to-gether in various spheres of activities for the last three decades, since, in fact, the creation of the province of Bihar and orissa in 1912. In 1921 We both found ourselves as elected members of the central

Assembly, and in my Candidature for the deputy Presidentship of the Assembly, he not only voted for me, but canvassed for me and obtained a number of votes from amongst his friends. All these years we have been on the very best of terms. You will thus see that his death has been a great loss to me. quite apart from the puplic loss to Bihar and Orissa and the Patna university, of which he was a fellow. I am writting to offer you and your wife my heart felt condolences, and deepest symathy in your bereavement. I shall be greatful to you by your kindly conveing my message to other members of the family of my dear departed friend, Brajasundar Das, With my kind regards and good wishes, I remain.

Yours
Sincerely
S. P. Sinha

P. S—As the college is closed, and you may not be at Cuttack, I am posting this letter registered to insure its safe delivery.

*

Berhampur Jail
10-6-1944

My Dear Satyasundar,

I am shocked to read from the news-papers the sad demise of Brajasundar Babu. To me, he was a beloved to be respected behind. You know the limitation of a security prisoner even in a condolence letter. This is the greatest shock of life to you, your mother and rest of the family. May He bestow His heavenly

blessings on you all to over-come this terrible grief and to go forward in life. × × ×

Yours Sincerely
Biswanath Das
Security Prisoner



× × × Brajasundar Das who, left unequivocal records informing the province, his demise at this crisis is a great loss to the province.

Radhamohan Panda
Rayagada
12-6-44



× × × Accept heartfull condolence. Orissa lost her best.

Dibakar Patnaik
Berhampur-Ganjam



Over wheelmed, dear Brajasundar is no more. Orissa lost noble devoted son, illustrious leader of Culture. My deepest sympathy.

Swami Bichitrananda Das.



The whole province has lost a man who served the province till his death and who was loved by all. × × ×

M. N. Deb
Rajbati Balasore
12. 6. 44

Dear Satyasundar

I am very sorry to read the sad news contained in your letter dated 10-6-1944 that my friend and your venerable father, Brajasundar Das is no more in this world. × × ×

Yours Sincerely
Maharaja of Jeypore
15. 6. 44



I was simply shocked to read today from a Madras newspaper that dear old Braja Babu is no more. Just a few days ago I read that he was ailing and as his ailings have been so numerous, I never thought or dreamt that the end would come so soon in him. I have lost a dear old friend, and Orissa has lost staunch worker. I shall miss very much charming old Braja Babu at Cuttack. × ×

We have lost a charming and dear old man.

Rajah Bahadur of Khallikote
Dilkush Mahal
Uotokamund, S. India
12-6-44



The late Mr. Das was one of my best friends and has death is a great pessonal loss to me. × ×

Raja, Khariar
14th June, 1944



